# ଝଡ଼ ଓ ଅନ୍ୟାନ୍ୟ ଗଳ୍ପ

ଚନ୍ଦ୍ରଶେଖର ଦାସବର୍ମା

ପ୍ରକାଶକ - ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର-୭୫୧୦୦୧

ପ୍ରଥମ ପ୍ରକାଶ-୨୦୦୬

ମୁଦ୍ରଣ - ଶୋଭନ୍
ଆଚାର୍ଯ୍ୟ ବିହାର
ଭୁବନେଶ୍ୱର-୧୫

**Jhada ebam Anyana Galpa**
**Chandra Sekhar Dasburma**

Published by
**LARK BOOKS**
Subarnarekha Chambers
Bhauma Nagar,
Bhubaneswar - 751001

First Edition - 2006

Printed at
**Sovan**
Acharya Vihar
Bhubaneswar - 15

# ମୋ କଥା

କ୍ଷୁଦ୍ରଗଳ୍ପ ଆଧୁନିକ କାଳର ଏକ ସାରସ୍ୱତ କଳାକୃତି । ଗପ କହିବା ଏବଂ ଗପ ଶୁଣିବା ମଣିଷର ଏକ ଜନ୍ମଜାତ ପ୍ରବୃତ୍ତି । ଧରାପୃଷ୍ଠରେ ଜୀବନର ଆରମ୍ଭ କାଳରୁ ସମତାଳ ଦେଇ ଛୁଟି ଆସିଛି ଗପର ଧାରା । ମଣିଷର ଜୀବନ ଘଟଣାମୟ । ସେହି ଘଟଣା ସମୂହକୁ ବନେଇ ଚୁନେଇ ଅନ୍ୟ ଆଗରେ ପ୍ରକାଶ କଲେ ହୁଏ ଗପ । ତା ସହ ଝରଣାର କୁଳୁକୁଳୁ ତାନ, ପକ୍ଷୀର କାକଳି, ସୂର୍ଯ୍ୟ ଚନ୍ଦ୍ରଙ୍କ ଉଦୟ ଅସ୍ତ, ଋତୁଚକ୍ରର ଆବର୍ତ୍ତନ, ବସନ୍ତର ଆଗମନରେ ମଳୟର ପ୍ରବାହ , ବିଭିନ୍ନ ସମୟର ପ୍ରାକୃତିକ ବିପର୍ଯ୍ୟୟ, ପ୍ରକୃତିର ତାଣ୍ଡବଲୀଳା,ଜୀବନ ଜଞ୍ଜାଳର ମୋହ ମଣିଷର ମନକୁ ସୃଷ୍ଟିର ପ୍ରାକ୍ ପର୍ଯ୍ୟାୟରେ ଦ୍ରବୀଭୂତ କରିଥିବ । ପିଲାଟିଏର କାନ୍ଦ ବନ୍ଦ କରିବାକୁ ମା' ଯେତେବେଳେ ତାର ପିଠି ଥାପୁଡାଇ ଆରମ୍ଭ କରିଥିବ ପରୀ ରାଇଜର କାହାଣୀ, ପିଲାର କାନ୍ଦ ବନ୍ଦ ହୋଇଯାଇଥିବ ସେତେବେଳେ ଥପ୍ କରି । ପଥକ୍ଲାନ୍ତ ପଥିକ ଯେତେବେଳେ ଶୁଣିଥିବ ପକ୍ଷୀରାଜ ଘୋଡାର କାହାଣୀ ସେତେବେଳେ ତାର କ୍ଲାନ୍ତି ମେଣ୍ଟି ଯାଇଥିବ । ତା ସହ ଜୀବନର ଯେତେବେଳେ ମଣିଷକୁ ଆବଶ୍ୟକ ହୋଇଥିବ କିଛି ମନୋରଞ୍ଜନ ସେତେବେଳେ ସେ ଖୋଜିଥିବ ଗପ । ପ୍ରକୃତିର ବିଭିନ୍ନ ଉପାଦାନ, ପଶୁପକ୍ଷୀ, ନଈ ଝରଣା ସହ ପ୍ରାଚୀନ ସମୟର ଗପ ସଂଶ୍ଳିଷ୍ଟ ଥିଲା । ଆଧୁନିକ ଗପର ମୁଖ୍ୟ ଉପାଦାନ କିନ୍ତୁ ମଣିଷ । ସେ ଶୁଣେ, ଗପରୁ ତା ନିଜ ଜୀବନର କଥା, ତା ପରିବେଶର କଥା । ଗପ ଦର୍ପଣରେ ସମାଜର କଥା ହୁଏ ପ୍ରତିବିମ୍ବିତ । ମଣିଷର ଜୀବନ ସହିତ ଗପ ଅଙ୍ଗାଅଙ୍ଗୀ ଭାବେ ଜଡିତ ଥିବାରୁ ବୋଧହୁଏ ଯୁଗେ ଯୁଗେ ଗପଟିଏ ପଢିବା ପାଇଁ ପାଠକର ଆଗ୍ରହ ରହିଆସିଛି । ଆଉ ଏଇଥି ପାଇଁ ମଣିଷ ଜୀବନକୁ ନେଇ କଥାକାରମାନେ ରଚନା କରିଛନ୍ତି ଅନେକ ଅସରନ୍ତି ଗଳ୍ପ ।

ଜଣେ ସମାଜ ସଚେତନ ପ୍ରବୀଣ କଥାଶିଳ୍ପୀ ଭାବରେ ଆମ ଚତୁଃପାର୍ଶ୍ୱରେ ଆତଯାତ ହେଉଥିବା ଚରିତ୍ରମାନଙ୍କର ପାଖରେ ଉପସ୍ଥାପନ କରିବାର କ୍ଷୁଦ୍ରତମ ପ୍ରୟାସ ମୁଁ କରିଥାଏ ମୋ ସୃଷ୍ଟିମାନଙ୍କରେ । ଗୋଟିଏ ସଫଳ କ୍ଷୁଦ୍ରଗଳ୍ପର ଗଠନ ପରିପାଟୀକୁ ଦୃଷ୍ଟିରେ ରଖି ପାଠକର ଜିଜ୍ଞାସାକୁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଧରି ରଖି ପାରିବାର କଳା କୌଶଳକୁ ଅବଲମ୍ବନ କରି ପାଠକମାନଙ୍କର ମନରେ ଅହେତୁକ ଆଗ୍ରହ ସୃଷ୍ଟି କରିବା ଲକ୍ଷ୍ୟରେ ଆଜି ପର୍ଯ୍ୟନ୍ତ ମୁଁ ମଗ୍ନ । ଦୀର୍ଘ ଚାରିଦଶନ୍ଧି ଧରି ମୁଁ କେବଳ ଏହି ଚେଷ୍ଟାରେ

ନିଜକୁ ହଜାଇ ଦେଇଛି । ମୋ ଗଳ୍ପଗୁଡିକ ବେଳେ ବେଳେ ସମାଲୋଚନାର ଶୀକାର ହୋଇଛି ସତ କିନ୍ତୁ ସେ ସବୁ ରଚନା ସୃଷ୍ଟିରେ କୌଣସି ପ୍ରକାରର ପ୍ରତିବନ୍ଧକ ସୃଷ୍ଟି କରି ନାହାନ୍ତି ବରଂ ଆଗକୁ ବଢିବା ପାଇଁ ସାହସ ଏବଂ ପ୍ରେରଣା ଯୋଗାଇ ଦେଇଛନ୍ତି । ମୁଁ ଏଥିପାଇଁ ମୋ ପାଠକମାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି । ସେମାନଙ୍କର ଅକୁଣ୍ଠିତ ଆଗ୍ରହ ହିଁ ମତେ ଏ ପର୍ଯ୍ୟନ୍ତ ନେଇ ଆସିଛି । ଆଧୁନିକ ସମାଜରେ ଦେଖାଦେଇଥିବା ଅନେକ ଘଟଣାବଳୀ ମୋ ଗଳ୍ପଗୁଡିକୁ ଆଣିଦେଇଛନ୍ତି ଅନେକ ପାଠକୀୟ ସ୍ୱୀକୃତି ।

ଏଇଟି ମୋର ପଞ୍ଚଦଶତମ ଗଳ୍ପ ସଂକଳନ । ଗଳ୍ପଗୁଡିକ ଏହା ପୂର୍ବରୁ ଓଡିଶାର ସୁନାମଧନ୍ୟ ପତ୍ର ପତ୍ରିକାରେ ପ୍ରକାଶ ପାଇ ପାଠକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଛି । ଏହି ଗଳ୍ପ ସଂକଳନଟିକୁ ଆଗ୍ରହରେ ପ୍ରକାଶ କରିଛନ୍ତି ଓଡିଶାର ଅଗ୍ରଣୀ ପ୍ରକାଶନ ସଂସ୍ଥା ଲାର୍କ ବୁକ୍ସ, ଭୁବନେଶ୍ୱର । ଏହି ଅବସରରେ ଲାର୍କ ବୁକ୍ସର ସ୍ୱତାଧିକାରୀ ଶ୍ରୀଯୁକ୍ତ ମହେନ୍ଦ୍ର ମିଶ୍ରଙ୍କୁ ମୁଁ ସାଧୁବାଦ ଜଣାଉଛି ।

ଚନ୍ଦ୍ରଶେଖର ଦାସବର୍ମା

# ସୂଚୀ



❖

# ଝଡ଼

ବେଳେବେଳେ ସ୍ମୃତିର ଝରକା ସବୁ ଧଡ଼ ଧଡ଼ କରି ଖୋଲିଯାଆନ୍ତି । ଗଭୀର ବର୍ଷା ରାତିରେ ଶୀତର ସକାଳରେ ରୌଦ୍ରର ଦ୍ୱିପ୍ରହରରେ ଏକୁଟିଆ ଥିଲାବେଳେ ମହେଶ, ମମତାର ମନ ଭିତରକୁ ଧସେଇ ପଶିଆସେ । କିଛି ମୂହୁର୍ତ୍ତ ପର୍ଯ୍ୟନ୍ତ ମମତା ତହଲିଯାଏ । ତାପରେ ନିଜର ସମ୍ବିତ ଫେରିପାଏ । ମହେଶ ଘରୁ ଯିବାର ଅନେକ ବର୍ଷ ହୋଇଗଲାଣି । ପୁରୁଣା ସ୍ମୃତିମାନେ ତାକୁ ବିଚଳିତ କରନ୍ତି, କଲବଲ କରନ୍ତି । କେବଳ ପିଲାମାନଙ୍କ ମୁହଁକୁ ଚାହିଁ ଅତୀତକୁ ଭୁଲିବାକୁ ଚେଷ୍ଟା କରିଛି । ସେମାନେ ହିଁ ତାର ସାହା ଭରସା । ତଥାପି ରାତିରେ ଏକୁଟିଆ ଶୋଇଲାବେଳେ ମମତାର ମନେ ପଡ଼ିଯାଏ ସେଇ କାଳ ରାତିର କଥା ।

ସେତେବେଳେ ମମତାର ବାହାଘର ମାତ୍ର ପାଞ୍ଚବର୍ଷ ହୋଇଥାଏ । ବୈବାହିକ ଜୀବନରେ ମହେଶ ତାକୁ ଅଶେଷ ତୃପ୍ତି ଏବଂ ଆନନ୍ଦ ଦେଇଥିଲେ । ପୁରସ୍କାର ସ୍ୱରୂପ ଭେଟି ଦେଇଥିଲେ ଦୁଇଟି ଅମୂଲ୍ୟ ରତ୍ନ ; ଅଂଶୁମାନ ଏବଂ ଅନାମିକା । ପିଲା ଦୁଇଟା ଦେଖିବାକୁ ଅବିକଳ ବାପାଙ୍କ ପରି । ଖୁସିରେ ଆନନ୍ଦରେ ଘର ଉଚ୍ଛୁଳି ପଡୁଥିବା ବେଳେ ଶ୍ୟାମଳୀ ଆସି ପହଞ୍ଚିଯାଏ ଦୁଇଜଣଙ୍କ ମଝିରେ । ଶ୍ୟାମଳୀ ଅଫିସରେ ମହେଶର ସହକର୍ମୀ । ମାତ୍ର ଦୁଇବର୍ଷର ସମ୍ପର୍କ ସେମାନଙ୍କର । କିନ୍ତୁ ଶ୍ୟାମଳୀର ରୂପ ଚାକଚକ୍ୟରେ ବିମୋହିତ ହୋଇ ମହେଶ ଭୁଲିଯାଏ ନିଜକୁ, ନିଜ ପରିସରକୁ, ନିଜ ରୂପବତୀ ପତ୍ନୀ ମମତାକୁ । ଏ ବିଷୟରେ ବେଶ କିଛିଦିନ ଶୁଣିଲା ପରେ ଦିନେ ରାତିରେ ମମତା ପଚାରିଦେଲା ମହେଶକୁ...

''କ'ଣ ମୁଁ ଯାହା ଶୁଣୁଛି ତା କ'ଣ ସତ ?''

''କ'ଣ ତୁ ଶ୍ୟାମଳୀ କଥା କହୁଛୁ ତ.. ହଁ ଶ୍ୟାମଳୀ ସାଥୀରେ ମୋର ସମ୍ପର୍କ ଅତି ନିବିଡ଼ ।''

''କ'ଣ ସ୍ୱାମୀ ସ୍ତ୍ରୀଠାରୁ ମଧ୍ୟ ବଡ଼..?'' ମମତା ପଚାରିଲା ।

''ହୁଁ ମୁଁ ତାକୁ କଥା ଦେଇଛି, ଆମେ ଦୁହେଁ ରେଜିଷ୍ଟ୍ରୀ ମ୍ୟାରେଜ କରିବୁ । କିନ୍ତୁ ତୁ ଛାଡ଼ପତ୍ର କାଗଜ ଦସ୍ତଖତ କରିବା ପରେ ।''

ହଠାତ୍ ଘର ଭିତରଟାରେ ଅଚାନକ ବିସ୍ଫୋରଣ । ମମତା କଳ୍ପନା କରିନଥିଲା ଏଭଳିଆ କଥାଟାଏ ଶୁଣିବ ବୋଲି ।

"ଏଥିରେ ତମର ସ୍ତ୍ରୀ ପିଲାଙ୍କ ଜୀବନ ଜଡ଼ିତ; ଟିକେ ଭାବିଚିନ୍ତି କଥାବାର୍ତ୍ତା କର । ସମାଜ ପ୍ରତି ତମର କ'ଣ କିଛି ଡରଭୟ ନାହିଁ ?"

"କି ସମାଜ ଭୟ ମତେ ଦେଖାଉଛୁ । କ'ଣ ବେଦୀରେ ହାତଥୋଇ ବିଭା ହୋଇଗଲୁ ବୋଲି ? ମନର ବନ୍ଧନ ନହେଲେ ସେ ବିବାହର କୌଣସି ମୂଲ୍ୟ ରହେନା ।"

"ମୁଁ କସ୍ମିନ କାଳେ ସେ କାଗଜରେ ଦସ୍ତଖତ କରିବି ନାହିଁ ତମେ ଯାହା ଇଚ୍ଛା କରିପାର ।" ମମତାର କଣ୍ଠରେ ଦୃଢ଼ତା ।

"ତୁ ବାହାରି ଯା ଏ ଘରୁ ଏଇ ମୁହୂର୍ତ୍ତରେ ।"

"ସେ ଭୁଲ ମଧ୍ୟ ମୁଁ କରିବି ନାହିଁ, କାରଣ ଏଠି ତମର ଯେତିକି ଅଧିକାର ମୋର ମଧ୍ୟ ସେତିକି ଅଧିକାର ।"

"ତେବେ ତୁ ମର ଏଇଠି । ମୁଁ ଯାଉଛି"— ସେଇ ରାତି ଅଧରେ ମହେଶ ତାର କିଛି ଜିନିଷପତ୍ର ଧରି ବାହାରି ଯାଇଥିଲା; ଆଉ ଆସିନାହିଁ ।

'ଲୋକଟା ବୋଧେ ସେ ନାଗୁଣୀ ଜାଲରେ ଫଶିଯାଇଛି ।'

ସେ ଚାଲିଗଲା ପରେ ହଠାତ୍ ସେ ଅନୁଭବ କଲା ନିଃସଙ୍ଗତା । ଘର ଭିତରଟାର ମଣିଷଟା ଘରୁ ବାହାରି ଚାଲିଗଲା । କ'ଣ ତାର ଅପରାଧ ? ଦିନ ରାତି ଧରି ତାକୁ ଅପେକ୍ଷା କରି ରହିବା କଣ ତାର ଅପରାଧ ? ଦେହ ମୁଣ୍ଡ ଖରାପ ହେଲେ ରାତି ରାତି ଜଗି ବସି ସେବା କରିବା କଣ ଅପରାଧ ? ଭଲରେ ମନ୍ଦରେ ପିଲାଙ୍କ ପାଇଁ କଣ ଅଳିକରିବା ଅପରାଧ ? କ'ଣ ତାର ଭୁଲ ନିଜେ ବି ବୁଝିପାରିଲାନି ମମତା ।

ବେଶ୍ କିଛିଦିନ ଲାଗିଥିଲା ମମତାକୁ ପରିସ୍ଥିତିକୁ ସାମନା କରିବାକୁ । ବୟସ ତାର କିଛି ହୋଇନଥିଲା - ତିରିଶ ବର୍ଷର ଯୁବତୀ - ଦୁଇ ଦୁଇଟା କୁନି ଛୁଆ - ଏଡ଼େ ବଡ଼ ଦୁନିଆ - ଏତେ ଲୋକ, ଏତେ ଗହଳି, ଏତେ ସମସ୍ୟା । ଏପରି ଅବସ୍ଥାରେ କେମିତି ସେ ହତାଶାକୁ ସାମନା କରିବ !

ଅରକ୍ଷିତକୁ ଦଇବ ସାହା ଭଳି ନିରଞ୍ଜନ ବାବୁ ଦିନେ ଆସିଥିଲେ ମମତା ଘରକୁ । ନିରଞ୍ଜନ ବାବୁ ତାଙ୍କ ସ୍ୱାମୀ ମହେଶର ଉପରିସ୍ଥ ଅଫିସର । ସେ ଘଟଣା ନିମନ୍ତେ ଦୁଃଖପ୍ରକାଶ କଲେ ଏବଂ ମମତାକୁ ସବୁ ପ୍ରକାର ସାହାଯ୍ୟ ଯୋଗାଇ ଦେବାର ପ୍ରତିଶ୍ରୁତି ଦେଲେ । କହିଲେ, ଜୀବନରେ ବଞ୍ଚିବାକୁ ହେଲେ ସଂଗ୍ରାମ ଦରକାର । ଅସୀମ ଧୈର୍ଯ୍ୟ ଓ ସାହସ ରଖନ୍ତୁ । ପିଲା ଦୁଇଟା ଯଦି ମଣିଷ ହୋଇଯିବେ ତେବେ ଆପଣଙ୍କ ଦୁଃଖ

ଦୂର ହୋଇଯିବ । ଆଉ ଏଥିପାଇଁ ଯାହା ସାହାଯ୍ୟ ଦରକାର ମୁଁ ଏବଂ ମୋର ଅଫିସ ଯୋଗାଇଦେବ ।

ଅଥଇ ସାଗରରେ ବୁଡ଼ିଗଲାବେଳେ କୂଳରେ ଲାଗିଗଲା ପରି ଲାଗିଲା ମମତାକୁ । ନିଜ ବାପା ମାଙ୍କ ପାଖରେ ଥିଲାବେଳେ ସିଲାଇ ମେସିନ୍‌ଟିଏ କିଣି ଦେଇଥିଲେ । ବାପା ଏବଂ ମା ତାକୁ ସିଲାଇ ଶିଖାଇ ଦେଇଥିଲେ । ବିଭିନ୍ନ ପ୍ରକାର ବୁଣା କୁଶଳର କାମ ମଧ୍ୟ ଶିଖିଥିଲା ସିଏ । ଏହି ଅଭିଜ୍ଞତାକୁ କାର୍ଯ୍ୟରେ ଲଗାଇବାକୁ ଚେଷ୍ଟା କଲା । ଘରେ ସିଲାଇ ମେସିନ୍‌ଟା ପକାଇଲା ଏବଂ ପାଖ ପଡ଼ୋଶୀଙ୍କର ଘରକୁ ଯାଇ କାମ ଆଣିଲା । ଘରେ ଦୁଇ ଦୁଇଟା ଛୋଟ ଛୁଆ । ଏଣୁ ଘରୁ ବାହାରକୁ ନଯାଇ ଘର ଭିତରେ ହିଁ ଦୋକାନଟିଏ କଲା । ପ୍ରଥମ କିଛି ଦିନ କାମ କଲା ପରେ ଆଉ ଜଣେ ସହକାରୀ ରଖିଲା । ଧୀରେ ଧୀରେ କାମ ବଢ଼ିଲା । ତା ସଙ୍ଗେ ସଙ୍ଗେ ଦାୟିତ୍ୱ ମଧ୍ୟ । ପିଲା ଦୁଇଟା ବଡ଼ ହେଲେ । ସ୍କୁଲ ଗଲେ । ମମତାର ବ୍ୟବସାୟ ମଧ୍ୟ ବଢ଼ିଲା । ନିରଞ୍ଜନ ବାବୁଙ୍କ ସହାୟତାରେ ଜିଲା ଶିଳ୍ପ କେନ୍ଦ୍ରକୁ ଯାଇ କିଛି ଲୋନ୍ ଆଣିଲା ଆଉ ଚାରୋଟି ମେସିନ୍ ପକାଇଲା । ସେଇ ଅନୁସାରେ ଲୋକ ମଧ୍ୟ ରଖିଲା । ବର୍ତ୍ତମାନ ତାର ଅନୁଷ୍ଠାନ ଏକ ଅଗ୍ରଣୀ ଅନୁଷ୍ଠାନ ରୂପେ ପରିଗଣିତ ହେଲାଣି ।

ନିରଞ୍ଜନ ବାବୁ ବେଳେ ବେଳେ ଆସନ୍ତି ସାହାଯ୍ୟ ସହାନୁଭୂତି ଦେଖାନ୍ତି । କୁହନ୍ତି ଆଗକୁ ଚାଲ, ପଛକୁ ଅନାଇଲେ କଷ୍ଟ ପାଇବ । ମମତା କୁହେ 'ସାର, ଆପଣଙ୍କ ସାହାଯ୍ୟ ଭୁଲିବାର ନୁହେଁ, ମୁଁ କେମିତି ଏ ଋଣ ଶୁଝିବି ଜାଣିପାରୁନାହିଁ ।' ନିରଞ୍ଜନ ବାବୁ କୁହନ୍ତି 'ଆମେ ସବୁ ମାୟାରେ ବନ୍ଧା । ପରସ୍ପର ପରସ୍ପରକୁ ସାହାଯ୍ୟ ନକଲେ କେମିତି ହେବ । ହଁ ତମକୁ କହିବାକୁ ଆସିଥିଲି ମହେଶ ଆଉ ଏଠି ନାହିଁ । ସେ ଝିଅଟାକୁ ନେଇ କଲିକତା ପଳାଇଛି ।' ମମତା ଶୁଣିଲା, ହେଲେ କିଛି ଉତ୍ତର ଦେଲାନାହିଁ ।

ସମୟ ତାର ସ୍ୱାଭାବିକ ଗତିରେ ଗଡ଼ିଚାଲିଛି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ମମତାର ଦାୟିତ୍ୱବୋଧ ମଧ୍ୟ ବଢ଼ିଛି । ପୁଅ ଅଂଶୁମାନ ବର୍ତ୍ତମାନ ଇଞ୍ଜିନିୟରିଂ କଲେଜରେ, ଝିଅ 'ଅନାମିକା' ବି.ଏସ.ସି. ପଢୁଛି । ଅଂଶୁମାନ କଲେଜରେ ବୃତ୍ତି ମଧ୍ୟ ପାଇଛି । ମମତା ସବୁ କିଛି ସେଇ ନାରାୟଣଙ୍କ ଉପରେ ଛାଡ଼ିଦେଇଛି । ଅନାମିକା ବେଳେ ବେଳେ ସମୟ ପାଇଲେ ସିଲେଇରେ ମଧ୍ୟ ସାହାଯ୍ୟ କରୁଛି । ଏବେ ନିକଟରେ ସିଲାଇ ସାଙ୍ଗକୁ ମମତା ସିଲାଇ ଶିକ୍ଷାକେନ୍ଦ୍ରଟିଏ ମଧ୍ୟ ଖୋଲିଛି । ସେଥିପାଇଁ ଆଉ ଗୋଟିଏ ଘର ମଧ୍ୟ ତିଆରି କରିଛି । କିଛି ଝିଅ ସିଲାଇଟ୍ରେନିଂ ନେବାପାଇଁ ଆସୁଛନ୍ତି । ଦିନ ଥିଲା ଘରେ ଦୁଇଓଳି ସେମାନେ ଖାଇବାକୁ ପାଉନଥିଲେ । ପରିସ୍ଥିତି ବଦଳି ଯାଇଛି । ପୁଅ

ଝିଅଙ୍କୁ ସେ ବାପା ମାଙ୍କ ସ୍ନେହ ଦେଇ ପାରିଛି । ବେଳେବେଳେ ପୁଅ ଅଂଶୁମାନ ପଚାରିଦିଏ, ମାମା ତମର ତ କିଛି ଦୋଷ ନାହିଁ ବାପା ଛାଡ଼ି ଚାଲିଗଲେ କାହିଁକି ? ମମତା ଉତ୍ତର ଦିଏ, ସେସବୁ ସମୟ ହିଁ କହିବ; 'ତୁ ବର୍ତ୍ତମାନ କେମିତି ପାଶ କରି ଚାକିରି କରିବୁ ସେଇୟା ହିଁ ମୋର ଚିନ୍ତା ।' ଅଂଶୁମାନ ଉତ୍ତର ଦିଏ ନାହିଁ କାରଣ ସିଏ ଜାଣେ ଏ ବିଷୟରେ ବେଶୀ କଥା ହେଲେ ମାମା ତାର ଦୁଃଖ ପାଇବ ।

ବେଳେବେଳେ କାମରେ ଥକି ଗଲାପରେ ମନ ଦେହ ଉଭୟ ବିଶ୍ରାମ ଚାହାନ୍ତି । କେତେବେଳେ ମମତାର ସେଇ ପୂର୍ବଦିନର ସ୍ମୃତିମାନ ସାମନାକୁ ଆସନ୍ତି । ବିବାହର ପ୍ରଥମ କିଛିବର୍ଷ ଥିଲା ଅନେକ ଆଶାର ବର୍ଷ । ମହେଶ ତାଙ୍କ କଥା କୁହନ୍ତି, ତାଙ୍କ କମ୍ପାନୀ କଥା କୁହନ୍ତି ଆଉ କୁହନ୍ତି ତାଙ୍କର ଚାକିରୀ କଥା । ସେଲସ୍ ଏକ୍‌ଜିକ୍ୟୁଟିଭ ହୋଇଥିବାରୁ ତାଙ୍କୁ ଅନେକ ସମୟରେ ବାହାରକୁ ଯିବାକୁ ପଡୁଥିବାରୁ ସେଇ ସମୟରେ ମମତା ଏକୁଟିଆ ହେଉଥିବାରୁ ମନ ଦୁଃଖ କରନ୍ତି ଆଉ କୁହନ୍ତି "ମୋର ପ୍ରମୋଶନ ହୋଇଗଲେ ମତେ ଆଉ ବାହାରକୁ ଯିବାକୁ ହେବନି । ଖାଲି ତମରି ପାଖରେ ରହିବି ଅଫିସ ଯିବା ସମୟ ଛଡ଼ା ।"ମମତା ହସିଦିଏ... "ହଉ ଭଗବାନଙ୍କୁ ଡାକ ଜଲଦି ତମର ପ୍ରମୋସନ ହୋଇଯାଉ ।" ଓଃ କୁଆଡ଼େ ଗଲା ସେ ଦିନ ଗୁଡ଼ାକ । ମମତା ହଠାତ୍ ତରତର ହୋଇ ଉଠେ... ଅନାମିକା କଲେଜରୁ ଆସିବ... ତା ପାଇଁ ଜଳଖିଆ ତିଆରି କରିବ । ସବୁ ଭାବନାର ଅନ୍ତ ହୋଇଯାଏ ।

ସବୁ କିଛି ସୁରୁଖୁରୁରେ ଚାଲିଥିଲାବେଳେ ଦିନେ ହଠାତ୍ ସକାଳୁ ସକାଳୁ ନିରଞ୍ଜନ ବାବୁ ଆସି ମମତାର ଘରେ ପହଞ୍ଚିଲେ । ମମତା ସେତେବେଳକୁ ଗାଧୋଇ ସାରି ମନ୍ଦିର ବାହାରିଥାଏ । ଘର ଭିତରେ 'ଅନାମିକା' ଖାଲି ଏପଟ ସେପଟ ହେଉଥାଏ । ନିରଞ୍ଜନ ବାବୁ ଯା ଭିତରେ ମମତାର ଜଣେ ଶୁଭଚିନ୍ତିକ ପାଲଟି ଯାଇଥାନ୍ତି । ଏଣୁ ମମତାଙ୍କ ଘରେ ତାଙ୍କର ପ୍ରବେଶ ପାଇଁ ଦ୍ୱାର ସବୁବେଳେ ଉନ୍ମୁକ୍ତ ଥାଏ । ମମତା ହଠାତ୍ ଦେଖିପକାଇ 'ସାର ! ଆପଣ ସକାଳୁ ସକାଳୁ.. । ସାର ଟିକିଏ ବସନ୍ତୁ, ମୁଁ ଟିକିଏ ପୂଜାଟା ସାରିଦେଇ ଆସେ ।' ନିରଞ୍ଜନ ବାବୁ କହିଲେ, ଆଜି ଗୋଟାଏ ଶୁଭବେଳା; କାରଣ ମୁଁ ତମ ଘରକୁ ଆସିଛି ଆଉ ତମେ ମନ୍ଦିର ବାହାରିଛ । ଏହା କହି ପକେଟରୁ ଦୁଇ ତିନୋଟି ଫଟୋ ଦେଖାଇଲେ । 'ସାର ଏସବୁ... ? ମୁଁ କିଛି ହଠାତ୍ ବୁଝିପାରିଲିନି ।' ନିରଞ୍ଜନ ବାବୁ ହସି କହିଲେ 'ଅନାମିକା' ର ବୟସ କେତେ ହେଲାଣି ? —'ସାର ଏଇ କୋଡ଼ିଏ ଚାଲିଲା ।' ଆଉ ତମେ କେତେବର୍ଷରେ ବାହା ହୋଇଥିଲ ? 'ସାର... ଅଠର ।' ମମତା ନଭାବି ଉତ୍ତରଟାଏ ଦେଇଦେଲା । 'ହଉ

ହେଲା ଫଟୋ ଏବଂ ଏହା ହେଲା ପୁଅର ବାୟୋଡ଼ାଟା । ତମେ ଦେଖି ଚିନ୍ତାକରି ମତେ କହିବ- ମୁଁ ଚାଲିଲି । ଖାଲି ଏତିକି କହିଲି- ଝିଅ ବର୍ତ୍ତମାନ ବିବାହଯୋଗ୍ୟା ହେଲାଣି - ଏଣୁ ଠିକ୍ ସମୟରେ ଠିକ୍ କାମ କରିବାକୁ ପଡ଼ିବ । ' ନିରଞ୍ଜନ ବାବୁ ଚାଲିଗଲେ ।

ହଠାତ୍ ମମତା କିଛି ସମୟ ପାଇଁ ଚୁପ ହୋଇ ରହିଗଲା । ତାପରେ ନିଜକୁ ଭାବନା ରାଜ୍ୟରୁ ବାହାର କରିଆଣି ମନ୍ଦିର ଗଲା ଏବଂ ମନ୍ଦିର ଫେରି ସେ ଫଟୋ ଏବଂ ବାୟୋଡ଼ାଟା ଗୁଡ଼ାକ ଏପଟ ସେପଟ କରି ଦେଖିଲା । ପ୍ରସ୍ତାବ ଗୁଡ଼ାକ ବେଶ୍ ଉତ୍ସାହଜନକ ଥିଲା । କିଏ ଇଞ୍ଜିନିୟର ତ କିଏ ଡାକ୍ତର । ଘଟଣାଟା କିନ୍ତୁ ମମତାକୁ ଖୁବ୍ ହରଡ଼ଘଣାରେ ପକାଇଦେଲା । 'ଅନାମିକା' ବଗିଚାରେ ପିଲାମାନଙ୍କ ସାଙ୍ଗରେ ଖେଳୁଥିଲା । ଏବେ ମଧ୍ୟ ଅନାମିକା ତା ସାଙ୍ଗରେ ପିଲାଙ୍କ ପରି ବ୍ୟବହାର କରେ; ମାମି ମାମି ବୋଲି ଡାକି ପଛରେ ଗୋଡ଼ାଏ । କଲେଜରୁ ଯେ ମାମାର କାନି ଛାଡ଼େନି— ସିଏ ପୁଣି ବାହାହେବ... ଅବଶ୍ୟ ସେମିତି ଦେଖି ବୟସ ବଢ଼ିବା ସଙ୍ଗେ ସଙ୍ଗେ ଝିଅମାନଙ୍କର ସୌନ୍ଦର୍ଯ୍ୟ ଉପରେ ପ୍ରଭାବ ପଡ଼େ । ହୁଏତ ଆଉ ଦୁଇ ତିନିବର୍ଷ ପରେ ଅନାମିକାର ଚେହେରାରେ କିଛି ପରିବର୍ତ୍ତନ ଘଟିପାରେ ।

ମମତା ନିଜ ବାହାଘର କଥା ମନେ ପକାଇଲା । ମହେଶ ତାକୁ ପ୍ରଥମ ଦେଖାରେ ହିଁ ପସନ୍ଦ କରିଥିଲେ । 'କମ୍ପାନୀ ଏକ୍ସିକ୍ୟୁଟିଭ ।' ମୋ ମାଙ୍କର ନା କରିବାର ପ୍ରଶ୍ନ ନଥିଲା । ସେତେବେଳେ ମମତା କଲେଜ ଛାତ୍ରୀ । ହଠାତ୍ ପଢ଼ାରେ ଡୋରି ବନ୍ଧା ହୋଇଯାଇଥିଲା । କିଏ ଜାଣେ ଭାଗ୍ୟରେ କଣ ଲେଖାଅଛି ? ନିରଞ୍ଜନ ବାବୁ କୁହନ୍ତି ଏସବୁ ଗୋଟେ ଗୋଟେ ଯୋଗ । ସମୟ ଆସିଲେ ବେଳେବେଳେ ତମେ ଯାହା ଭାବୁନଥିବ ତାହା ଘଟିଯିବ । ତେଣୁ କିଏ କହିବ ଅନାମିକାର ବାହାଘର ହଠାତ୍ ନହବ ବୋଲି ? ସତରେ ଅନାମିକାର ବାହାଘର କଥା ତ ଭାବିଲା ମାତ୍ରେ ମମତାର ଆଖିରେ ଲୁହ ଆସିଗଲା । ତେବେ ଏ ବିଷୟରେ ସମୟ ଦେଖି ସେ ବ୍ୟବସ୍ଥା କରିବ ।

ସେଦିନ ଦିନସାରା ମମତା ଚିନ୍ତାମଗ୍ନ ରହିଲା । ଛୁଟିଦିନ ଥିବାରୁ ବିଶେଷ କାମ ନଥାଏ । ଅନାମିକା ତାର ମନର ଅବସ୍ଥାକୁ ଲକ୍ଷ୍ୟ କରି ପଚାରିଲା, 'ମାମା, ତମର ଆଜି କଣ ହୋଇଛି କି ?' ମମତା କହିଲା 'କାହିଁ ନା ତ ?'

'କିନ୍ତୁ ତମର ମନ ଯେ ଭାରାକ୍ରାନ୍ତ ଏକଥା ଯେ କେହି ଦେଖିଲେ ଜାଣିଯିବ । ମୁଁ ଦେଖୁଛି ଆଜି ତମେ କେମିତି କ୍ଳାନ୍ତ ଜଣାପଡି ଖୁବ୍ ଶୀଘ୍ର ଥକି ଗଲାପରି ଜଣାପଡୁଛ । ସତେ ଯେମିତି ତମ ମୁଣ୍ଡ ଉପରେ ଶହେ କିଲୋ ପଥର କିଏ ନଦି ଦେଇଛି । କ'ଣ ହୋଇଛି ତମର ?'

'ନାହିଁ ଲୋ ମା... ମୁଁ ଏଇ ଘର କଥା ଚିନ୍ତା କରୁଥିଲି ?'

'କାହିଁ ଘରର ତ କିଛି ଅସୁବିଧା ମୁଁ ଦେଖୁନାହିଁ ।'

'ନାଇଁ ଯେ ଏଇ ଦୁଇବର୍ଷ ପରେ ଅଂଶୁର ପାଠ ସରିଯିବ.. ସେ ଚାକିରୀ କରିବ... ପୁଣି ତା ପାଇଁ ବୋହୂ ଖୋଜାହେବ । ଏ ଘରକୁ ଝିଅଟିଏ ଆସିବ... ଏଡ଼େ ଛୋଟ ଘର ?'

'ଓଃ, ଭାଇ ତ ଚାକିରୀ କରିବ ଆଉ ସେଇ ପଇସାରେ ଆମେ ଉପରେ ଆଉ ଗୋଟେ ଘର କରିବାନି ?'

'ତା ପରେ ପୁଣି ତୋ ବାହାଘର... ।'

'ଓଃ କଥାଟା ତାହେଲେ ଏଇଠି... ହଁ ମୁଁ କହିଦେଉଛି ମାମା ଏମ.ଏ. ପାଶ କଲା ପୂର୍ବରୁ ମୋ ବାହାଘର କଥା ଉଠେଇବନି... ।'

'ସେ କଥାଟା ସତ ଯେ ଆଗରୁ ବନ୍ଦୋବସ୍ତ ନକଲେ... ।'

ଅନାମିକା ବିରକ୍ତ ହୋଇ ମମତାଙ୍କ ପାଖ ଛାଡ଼ି ପଳାଇଲା ।

ମମତା ମନକୁ ମନ କହିଲା 'ପାଗଳୀଟା' ।

ମମତା ଅନାମିକାର ବାହାଘର ଭାବିଲାମାତ୍ରେ ମହେଶର ସ୍ମୃତି ମନକୁ ମନ ହୃଦୟ ଭିତରକୁ ଧସେଇ ପଶିଆସେ ଅଦିନ ଝଡ଼ ଭଳି । ଯେଉଁମାନେ ପ୍ରସ୍ତାବ ନେଇ ଆସିବେ ସେମାନେ ପ୍ରଥମେ ପିତୃ ପରିଚୟ ଖୋଜିବେ । ଭଲ ଘର ନଥିଲେ ଭଲ ବର ମିଳିବ ନାହିଁ... କଣ ବା ଉତ୍ତର ଦେବ ସିଏ... ସାମାନ୍ୟ କିଛି ଦୋଷ ନଥାଇ ମଧ୍ୟ ସେ ଆଜି ଦୋଷୀ... । ଅନେକ ଟିପ୍ପଣୀ ସେ ଶୁଣିଛି ଅତୀତରେ । ସେସବୁ ସମୟର ସାଙ୍ଗରେ ଲୁଚି ଛପି ଗଲାଣି । ନିରଞ୍ଜନ ବାବୁ ଆଶ୍ୱାସନା ଦେଇଛନ୍ତି... କହିଛନ୍ତି ସେ ସବୁ ବିଷୟରେ ତାର ମୁଣ୍ଡ ଖେଳେଇବା ଦରକାର ନାହିଁ । ପୁଅ ବାଲାଙ୍କର ସୁନ୍ଦର ପାଠୁଆ ଝିଅ ଦରକାର, ଆଉ କିଛି ନାହିଁ । ଏପରିକି ଯୌତୁକର ସପକ୍ଷରେ ମଧ୍ୟ ସେମାନେ ନାହାନ୍ତି । ଯୌତୁକ କଥା ଉଠିଲେ ହିଁ ମମତା ମନରେ ଶଂକା ଜାଗେ । ସେ ଜାଣିଛି ଏହି ଯୌତୁକ ନେଇ ନାରୀଟିଏ ଯାବତ ପ୍ରକାର ଯନ୍ତ୍ରଣାର ସମ୍ମୁଖୀନ ହୁଏ । ଶାଶୁଘରେ ନାନା କଥା - ନାନା ନିର୍ଯାତନାର ଶିକାର ହୁଏ ଏବଂ ଫଳରେ ବୋହୂଟି ଆତ୍ମହତ୍ୟା କିମ୍ବା ଅନ୍ୟ କିଛି ଦୁର୍ଘଟଣାର ସମ୍ମୁଖୀନ ହେବାର ଅନେକ ନଜିର ଅଛି ।

ନିରଞ୍ଜନ ବାବୁ ଖବର ଦେଇଛନ୍ତି - ଆଉ ତିନିଦିନ ପରେ ସେମାନେ ଆସିବେ । ପୁଅର ବାପା ଜଣେ ବଡ଼ ଅଫିସର । ପୁଅ ଇଞ୍ଜିନିୟର । ଟାଟା କମ୍ପାନୀରେ ଚାକିରୀ କରିଛି । ଆସନ୍ତା ବର୍ଷ ବିଦେଶ ଯିବ । ଏଣୁ ତାର ବାପା ମାଆ ଠିକ୍ କରିଛନ୍ତି

ଏ ବର୍ଷ ବାହାଘର କରିଦେଲେ ସେମାନେ ଉଭୟ ସ୍ୱାମୀ ସ୍ତ୍ରୀ ଆସନ୍ତା ବର୍ଷ ବିଦେଶ ଯିବେ । ପ୍ରସ୍ତାବଟା ମନ୍ଦ ନୁହେଁ । ହେଲେ ତାଙ୍କର ଝିଅ ସେମାନଙ୍କୁ ପସନ୍ଦ ହେଲେ ତ ? ଅବଶ୍ୟ ଅନାମିକାର ଫଟୋ ଦେଖି ସେମାନେ ପସନ୍ଦ କରିଛନ୍ତି, କିନ୍ତୁ ଫଟୋ ଦେଖିଲେ ସବୁ କିଛି ଜାଣିହେବ ନାହିଁ । ସେମାନଙ୍କର ପସନ୍ଦ ହେଲେ ସେମାନେ ପୁଅକୁ ଖବର ଦେବେ । ପୁଅ ଦେଖିଲା ପରେ ଯାହା କିଛି ନିଷ୍ପତ୍ତି । ମମତା ଭାବିଲା ଝିଅଟିଏ ଥିଲେ ପ୍ରସ୍ତାବ ଆସିବ - କିନ୍ତୁ ହଠାତ୍ କରି ଝିଅ ବାହାଘର କଥା ଭାବିଲା ମାତ୍ରେ ତାର ମୁଣ୍ଡ ଝିମ୍ ଝିମ୍ ହୋଇଗଲା ।

ଅନେକ ଦିନ ପରେ ମମତା ଅସଜଡ଼ା ଘରଟାକୁ ସଜାଡ଼ି ଦେବାରେ ଲାଗିପଡ଼ିଛି । ଘରେ ନୂଆ ନୂଆ ପର୍ଦ୍ଦା ସବୁ କିଣାହୋଇଛି । ଡ୍ରଇଂରୁମରେ ପଡ଼ିଥିବା ସୋଫାସେଟକୁ ମଧ୍ୟ ବଦଳାଇ ଦିଆଯାଇଛି । ଟି ପୟ ଉପରେ ଫୁଲଦାନୀଟି ଫୁଲରେ ସଜା ହୋଇଛି । କାନ୍ଥରେ କିଛି ୱାଲ ପେଣ୍ଟିଂ ମଧ୍ୟ କିଣାଯାଇ ଲଗାଯାଇଛି । ଯେତେହେଲେ ଭାବି ସମୁଦି ଜଣେ ଅଫିସର- ପୁଅ ମଧ୍ୟ ଇଞ୍ଜିନିୟର । ପ୍ରଥମରୁ ସେମାନେ ଘର ଦେଖିଲେ ତାର ରୁଚି ସମ୍ପର୍କରେ କିଛି ଧାରଣା କରିପାରିବେ । ଗୋଟିଏ ବୋଲି ଝିଅ ତାର । କୌଣସି ଦିନ ତାକୁ ଅଭାବ ଅସୁବିଧାର ସମ୍ମୁଖୀନ ହେବାକୁ ଦେଇନାହିଁ ସେ । ବାପା ମାଆ ଉଭୟଙ୍କ ସ୍ନେହ ପାଇ ଅନାମିକା ନିଜକୁ ଖୁବ୍ ଭାଗ୍ୟବାନ ମନେ କରିଛି ।

ଏତେ ସବୁ ଖୁସିର ଆୟୋଜନ ଭିତରେ ମମତା ଲକ୍ଷ୍ୟ କଲା ଯେପରି ଅନାମିକା ମନରେ ଖୁସିର ସାମାନ୍ୟ ସ୍ପର୍ଶ ମଧ୍ୟ ନାହିଁ । ଆଉ ମାତ୍ର ଅଠଚାଳିଶ ଘଣ୍ଟା ରହିଲା । ମଝିରେ ଦୁଇଟା ରାତି । ତୃତୀୟ ଦିନ ସନ୍ଧ୍ୟାବେଳେ ସେମାନେ ଆସିବେ । ଝିଅଟା ତାଙ୍କ ହସ ଖୁସିରେ ରହିବା କଥା । କିନ୍ତୁ ମମତା ଦେଖିଲା ଅନାମିକାର ମନଟା ଏସବୁ କୌଣସି କାମରେ ଲାଗୁନାହିଁ । ସେ ଖାଲି କହୁଛି 'ଏତେ ତରତର କାହିଁକି ମାମା, ତମ ଝିଅ କଣ ତମକୁ ଗନ୍ଧାଉଛି ?'

ମମତା ଉତ୍ତର ଦେଲା - 'ତୁ କ'ଣ ଭାବୁଛୁ ଏକାଥରକେ ସବୁ ଫାଇନାଲ ହୋଇଯିବ ? ତୋତେ ସେମାନେ ଦେଖିବେ - ପସନ୍ଦ କରିବେ - ତାପରେ ପୁଅ ଆସିବ ତତେ ଦେଖିବ ତୁ ତାକୁ ଦେଖିବୁ । ତମ ଦି ଜଣକ ମତ ନନେଲେ ମୁଁ କଣ ଏ ବାହାଘରରେ ରାଜି ହେବି ? ତାପରେ ବାହାଘର ଯୋଗାଯୋଗର କଥା । ଅନେକ ବାହାଘର ନିଷ୍ପତ୍ତି ହୋଇ ମଧ୍ୟ ଶେଷ ମୁହୂର୍ତ୍ତରେ ଭାଙ୍ଗିଯାଉଛି । ବେଦୀରୁ ବର ମଧ୍ୟ ଲଉଟି ଯାଉଛି । ଏ ତ ଆରମ୍ଭ ମାତ୍ର... ତୁ କାହିଁକି ବ୍ୟସ୍ତ ହେଉଛୁ ? ଆହୁରି କେତେ କେତେ ଲୋଭନୀୟ

ପ୍ରସ୍ତାବମାନ ଆସିବ।''

ମମତା ଆଉ ଅନାମିକା କଥାରେ ଗୁରୁତ୍ୱ ଦେଲାନାହିଁ। ସାଧାରଣତଃ ଝିଅମାନେ ପ୍ରଥମେ ପ୍ରଥମେ ମନା କରନ୍ତି ତାପରେ ପୁଣି ବାହାହୋଇ ଖୁସିରେ ଘର ସଂସାର କରନ୍ତି। ଅନାମିକା ତାର ଝିଅ, ତାରି ରକ୍ତରେ ଗଢ଼ା। ତା କଥାରୁ ବାହାରି ଯିବନି।

ରାତିରେ ଅନାମିକା ଭଲ ଭାବେ ଖାଇଲା ନାହିଁ। ପଢ଼ାର ଆଳ ଦେଖାଇ ନିଜ ରୁମ୍‌କୁ ଚାଲିଗଲା। ମମତାକୁ ମଧ୍ୟ ସେଦିନ ରାତିରେ ଭଲ ନିଦ ହେଲାନାହିଁ। ପରଦିନ ସକାଳୁ ଅନେକ ଡେରିରେ ଉଠିଲା ଅନାମିକା। ଜଳଖିଆ ଖାଇବା ସମୟ ହୋଇଯିବାରୁ ମମତା ଡାକ ପକାଇଲା।

'ଆରେ ଏ କଣ ତୋର ଆଖି ଯେ ଫୁଲିଲା ଫୁଲିଲା ପରି ଦେଖାଯାଉଛି। ରାତିସାରା କଣ ପଢୁଥିଲୁ ନା କଣ ?'

'ନାଇଁ ମାମା ରାତିରେ ପୋକଟାଏ ପଡ଼ିଗଲାନା କ'ଣ, ମୁଁ ଟିକିଏ ଆଖିଟାକୁ ଦଳି ଦେଇଛି ସେଇଥିପାଇଁ ଫୁଲିଯାଇଛି ବୋଧେ।'

'କାହିଁ ଦେଖି ଆଇଲୁ ଆଇଲୁ...।'

ମମତା ଝିଅକୁ ପାଖକୁ ନେଲେ।

'ତୁ କାନ୍ଦିଛୁ ମାମା - ସତ କହ।'

ଏଥର ଅନାମିକା ସମ୍ଭାଳି ପାରିଲା ନାହିଁ... ପିଲାଙ୍କ ପରି କାନ୍ଦି ମମତାଙ୍କ ଛାତିରେ ମୁହଁ ଲୁଚାଇଲା।

'ମାମା, ତମେ ଏ ବାହାଘର ପ୍ରହସନ ବନ୍ଦକର, ପ୍ଲିଜ...।'

'କାହିଁକି ଏ ତ ଆରମ୍ଭ ମାତ୍ର... ଆହୁରି କେତେ ସୁନ୍ଦର ବରପାତ୍ର ସବୁ ଆସିବେ। ତୁ ଜଣକୁ ପସନ୍ଦ କରିବୁ... ଆଉ ତୋର ପସନ୍ଦ ହିଁ ମୋର ପସନ୍ଦ।'

'ମାମା ଯଦି ତମରି କଥା ହୁଏ ତେବେ ମୁଁ ଜଣକୁ ପସନ୍ଦ କରିଛି ମାମା। ଆଶା ତମେ ଅନୁମତି ଦେବ।' ହଠାତ୍ ଏଭଳିଆ ଉତ୍ତରଟାଏ ପାଇବ ବୋଲି ମମତା ସ୍ୱପ୍ନରେ ସୁଦ୍ଧା ଭାବିନଥିଲା। ଭାବିଥିଲା ଅନାମିକାର ପିଲାଗୁଣ ଏବେ ମଧ୍ୟ ଯାଇନାହିଁ। ଏ ପର୍ଯ୍ୟନ୍ତ ଭଲ ମନ୍ଦ ନିଷ୍ପତ୍ତି କରିବାର ବୟସ ଆସିନାହିଁ। ଏପର୍ଯ୍ୟନ୍ତ ସେ ମୋ କାନି ଛାଡ଼ିନି। କିନ୍ତୁ ଆଜି ଏ କ'ଣ କହୁଛି ସିଏ।... କୌଣସି ଦିନ ଏଭଳିଆ କଥା ତା କାନକୁ ଆସିନାହିଁ।

'ତୁ ଏ କଣ କହୁଛୁ ଅନାମିକା ମୁଁ ତ କିଛି ବୁଝିପାରୁନାହିଁ। ତୋ ଭଳିଆ

ପିଲା ପୁଣି ଏ ବୟସରେ । ନା ନା ପ୍ଲିଜ୍ ତୁ ଏଭଳିଆ କରିବସନା ଯାହା ଫଳରେ ଦୁନିଆରେ ମୁଁ ଲୋକହସା ହେବି । କେତେ ଦୁଃଖ କେତେ ଯନ୍ତ୍ରଣା ସହି ମୁଁ ତତେ ମଣିଷ କରିଛି, ତୁ କ'ଣ କେବେ ଅନୁଭବ କରିନାହୁଁ ?'

'ମୁଁ ତମମାନଙ୍କ ମନରେ ଦୁଃଖ ଦେବାଭଳି କିଛି କାମ କରିନାହିଁ । ଆମ ଦୁହିଁଙ୍କର ବନ୍ଧୁତା ରହିଛି - ଆମେ ଦୁହେଁ ଦୁଇବର୍ଷ ପରେ ବିବାହ କରିବୁ । ପ୍ରଥମେ ନିଜ କ୍ୟାରିୟର ଗଢ଼ିବୁ ତାପରେ ଯାଇ... ।'

'ହଉ ହଉ ବନ୍ଦକର ତୋର ଯୁକ୍ତି । ତୁ କ'ଣ ଗଢ଼ିବୁ ତୋ କ୍ୟାରିୟର ? ଆଜି ବାପା ନାହାନ୍ତି ବୋଲି ମତେ ଏଭଳିଆ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଛି ।' ଏଥର ମମତା ଖୁବ୍ ଜୋରରେ କାନ୍ଦିପକାଇଲା । ସତେ ଯେମିତି ଘର ଭିତରେ ଝଡ଼ଟାଏ ଅଚାନକ ସୃଷ୍ଟି ହୋଇଗଲା ।

ଅନାମିକା କହିଲା 'ମାମା ତମେ ମତେ ବିଶ୍ୱାସ କର - ତମ ବିଶ୍ୱାସରେ ମୁଁ କେବେ ବିଷ ଦେବିନାହିଁ । ଏ ବିଷୟରେ ମୁଁ ମଧ୍ୟ ଆଉ କିଛି କଥାହେବି ନାହିଁ । ତମ ମନରେ ମୁଁ ଆଘାତ ଦେଇଥିବାରୁ ଦୁଃଖିତ ମାମା ।' ଅନାମିକା ଯାଇ ଗୋଡ଼ ତଳେ ପଡ଼ିଗଲା ।

ସେଦିନ ରାତିରେ ମମତାକୁ ଆଉ ନିଦ ହେଲାନାହିଁ । ନିଜକୁ ଏକଦମ ଅସହାୟ ମନେକଲା । ହଠାତ୍ ତାର ମନେ ହେଲା ଏତେ ବଡ଼ ଦୁନିଆରେ ସେ ଏକଦମ ଏକୁଟିଆ ହୋଇଯାଇଛି । ଏ ଭଳିଆ ପରିସ୍ଥିତିରେ ପାଖରେ ଠିଆ ହେବା ପାଇଁ କେହି ନାହିଁ । ଏକ ଦୋଛକି ରାସ୍ତାରେ ଠିଆ ହୋଇ ସେ ପଥଭ୍ରଷ୍ଟା ହୋଇଯାଇଛି । ଭାବୁଛି କୋଉ ରାସ୍ତା ସେ ବାଛିନେବ । କୋଉଟା ଠିକ୍ ଆଉ କୋଉଟା ଭୁଲ । ଏଠି ତାର ଏକମାତ୍ର ଝିଅ । ଏଠି ଭାବପ୍ରବଣତାର ମୂଲ୍ୟ କିଛି ନାହିଁ । ପରିସ୍ଥିତିର ସାମନା କରିବାକୁ ପଡ଼ିବ । ହେଉ ପଛେ ଯେତେ କଠିନ ଏ ନିଷ୍ପତ୍ତି । ପ୍ରଥମେ ଭାବିଲା ନିରଞ୍ଜନକୁ ଏ ବିଷୟରେ ଜଣାଇବ । ପରେ ଭାବିଲା ନିଜେ ଆଗେ ବୁଝିବା ଦରକାର । ଘଟଣାଟା କେଉଁ ବାଟରେ ଯାଉଛି ତା ପରେ ଯାଇ ଯେଉଁ କଥା ।

ପରଦିନ ସକାଳେ ମମତା ତାର ନିଷ୍ପତ୍ତି ଶୁଣାଇଦେଲା । କହିଲା, 'ଅନାମିକା ତୁ ଆଜି ସେ ପିଲାକୁ ମୋ ଘରକୁ ସନ୍ଧ୍ୟାବେଳକୁ ଡାକ ଚା' ପିଇବା ପାଇଁ । ମୁଁ ତା ସାଥିରେ ଟିକିଏ କଥାବାର୍ତ୍ତା ହୁଏ । ଯଦି ମୁଁ ଦେଖିବି ସେ ପିଲାଟାର ଯୋଗ୍ୟତା ଅଛି ତୋର ହାତ ଧରିବାକୁ ତେବେ ମୁଁ ତତେ କଥା ଦେଉଛି ତୋର ମନରେ ମୁଁ ଦୁଃଖ ଦେବିନାହିଁ । ତା ପରେ ତମ ଦୁଇଜଣଙ୍କ ପାଇଁ ତ ମୋ ଜୀବନ । ତୋ ବାହାଘର ଯଦି

ଭଲ ଭଲରେ ହୋଇଯାଏ ତେବେ ବାହାର ଦୁନିଆର ଲୋକନିନ୍ଦାକୁ ମୁଁ ସହଜରେ ଆଡ଼େଇଯିବି । ମୋ ଜୀବନରେ ଖାଲି ଝଡ଼ ଉଠିଛି, ଥମିଯାଇଛି ମଧ୍ୟ ।

'ଓଃ ଇଉ ଆର ସୋ ସୁଇଟ' ମାମା । ଅନାମିକା କହିଲା ଏବଂ ଖୁସିରେ ନାଚି ଉଠିଲା । ଫୋନ କରିଦେଲା ତାର ବନ୍ଧୁକୁ ଏବଂ କହିଲା ଆଜି ସନ୍ଧ୍ୟାରେ 'ମାମା ତମକୁ ଚା'କୁ ଡାକିଛନ୍ତି' ।

ସନ୍ଧ୍ୟା ସମୟ ଆସିଗଲା । ଅନାମିକା ଖୁସିରେ ଖାଲି ଏପଟ ସେପଟ ହେଉଥାଏ । ଯଦି ଅନୁଭବ ମାମାଙ୍କ ସାଙ୍ଗରେ କିଛି ଏପଟ ସେପଟ କଥାବାର୍ତ୍ତା ହୁଅନ୍ତି ତ ସରିଲା କଥା । କିନ୍ତୁ ସେ ଅନୁଭବକୁ ଜାଣେ । ବେଶ୍ ମାପିଚୁପି କଥାବାର୍ତ୍ତା କରନ୍ତି ସେ । ସେଇଥିପାଇଁ ଅନାମିକା ତାକୁ ସବୁ କହିଛି । ଭଲ ଛାତ୍ର ହିସାବରେ ଅନୁଭବର କଲେଜରେ ନାଁ ମଧ୍ୟ ଅଛି । କଲେଜର ଅଧ୍ୟକ୍ଷ ମଧ୍ୟ ତା ଉପରେ ଖୁବ୍ ଉଚ୍ଚ ଆଶା ପୋଷଣ କରିଛନ୍ତି । ଏଥରକ ବେଷ୍ଟ ଗ୍ରାଜୁଏଟ ହେବାର ଆଶା ମଧ୍ୟ ରହିଛି ।

ବାହାରେ ମଟର ସାଇକେଲର ହର୍ଣ୍ଣ ଶୁଣାଗଲା । ଅନାମିକା ଦଉଡ଼ିଗଲା ଦୁଆର ଖୋଲିବାକୁ ।

'ମାଉସୀ ! ନମସ୍କାର... ମୋ ନା ଅନୁଭବ ମହାନ୍ତି ।'

'ବସ ବସ ବାପା, ମତେ ଅନାମିକା ତମ କଥା ସବୁ କହିଛି ।'ଅନୁଭବ ମୁହଁ ତଳକୁ କଲା ।

ମମତା ତା ମୁହଁକୁ ଲକ୍ଷ୍ୟ କଲା... ଆରେ ଏ କ'ଣ ଦେଖୁଛି ସେ ! ଇଏତ ସେଇ ମୁହଁ, ସେଇ ଚେହେରା, ସେଇ ଆଖି, ଚଉଡ଼ା କପାଳ ! ଏ ତ ଅବିକଳ ତାଙ୍କରି ପରି । ହଠାତ୍ ଉଠିଯାଇ ମମତା ତାକୁ ହଲାଇଦେଲେ ।

ଅନୁଭବ ଉଠିପଡ଼ିଲା ଚେୟାରରୁ ।

'ମାଉସୀ ମତେ ଆପଣ କିଛି କହୁଛନ୍ତି କି ? ଯାହା ପଚାରିବା କଥା ପଚାରନ୍ତୁ,ମୁଁ ଠିକ୍ ଠିକ୍ ଉତ୍ତର ଦେବି । ଅନାମିକା ମତେ କହିଛି ଆପଣଙ୍କର ତା ପ୍ରତି କେତେ ମମତା । ଏଣୁ ଆପଣଙ୍କ ମନରେ ଦୁଃଖ ଦେଲାଭଳି ଆମେ କିଛି କରିବୁ ନାହିଁ ।'

'ଆଚ୍ଛା ପୁଅ ତମ ନା କ'ଣ କହିଲ ?' ମମତା ସହଜ ହେବାକୁ ଚେଷ୍ଟା କରୁଥିଲା ।

'ଅନୁଭବ... ଅନୁଭବ ମହାନ୍ତି ।'

'ବାପା କ'ଣ କରନ୍ତି ?'

'ବାପାଙ୍କ ନା ମହେଶ ମହାନ୍ତି । ଆଗରୁ ଆମେ ସବୁ ଏକାଠି ଥିଲୁ ।

ବାପାଙ୍କର କଲିକତା ବଦଳି ହୋଇଯାଇଛି । ବାପା କଲିକତାରେ ଅଛନ୍ତି । ମୁଁ ଏଇଠି ଏକା ହଷ୍ଟେଲରେ ରୁହେ ।' ଅନୁଭବ ସହଜ ଭାବରେ ଉତ୍ତର ଦେଲା ।

ହଠାତ୍ ମମତା ଅନୁଭବ କଲା, ତା ଛାତିରେ ଯେପରି ଗୋଟେ ମୁଦ୍‌ଗର ପିଟି ହୋଇଗଲା । ସେ ଚେତାଶୂନ୍ୟ ହୋଇ ଚିତ୍କାର କରି ତଳକୁ ଗଡ଼ିପଡ଼ିଲା ।

ଭିତର ଘରୁ ହାତରେ ଦୁଇ କପ୍ ଚାହା ଧରି ଡ୍ରଇଂରୁମ୍‌ରେ ପ୍ରବେଶ କରୁଥିଲା ଅନାମିକା । ମା'ଙ୍କର ଏ ଅବସ୍ଥା ଦେଖି ଚିତ୍କାର କରି ଉଠିଲା । ଚାହା ଦୁଇ କପ୍ ହାତରୁ ଖସିପଡ଼ି ଭାଙ୍ଗି ଚୂରମାର ହୋଇଗଲା ।

ବାହାରେ ଆକାଶରେ ବର୍ଷା । ତା ସାଙ୍ଗକୁ ପ୍ରବଳ ବେଗରେ ପବନ ବହିବାକୁ ଆରମ୍ଭ କରିଥିଲା । ମନେ ହେଉଥିଲା ସତେ ଯେପରି ଏ ବତାସର ଗତି କ୍ରମଶଃ ବଢ଼ିବାକୁ ଆରମ୍ଭ କରିଛି ।

# ନିଷ୍କୃତି

ଡ୍ରଇଁ ରୁମର କାନ୍ଥରେ ଟଂଗା ହୋଇଥିବା ଘଣ୍ଟାଟା ସମୟର ସୂଚନା ଦେଇଥିଲା । ଆଠଟା ବାଜି ଯାଇଥିଲା । ଶୁଭ୍ରାର ହସ୍‌ପିଟାଲ ଯିବା ପାଇଁ ସମୟ ଗଡି ଯାଉଥିଲା । ଶାଶୂ ତେଣେ ବ୍ୟସ୍ତ ହେଉଥିବେ ଆସିବା ପାଇଁ । ରାତି ଡ୍ୟୁଟି ତାଂକର । ଫେରିଲେ ତାଂକର ଅନେକ କାମ— ଠାକୁର ପୂଜା, କୁନ୍‌ମୁନ୍‌ର କାମ ଇତ୍ୟାଦି । ବେଡ୍‌ରୁମରୁ କୁନ୍‌ମୁନ୍‌ର କାନ୍ଦଣା କମୁନଥିଲା । ଆୟା ତାକୁ ବୁଝାଇବାକୁ ଚେଷ୍ଟାକରି ପାରୁ ନଥିଲା । ସାରା ରାତି କୁନ୍‌ମୁନ୍ ତାରି କୋଳରେ ବିତାଇଥିଲା ଏବଂ ସକାଳୁ ମଧ୍ୟ କୋଳ ଛାଡିବାକୁ ନାରାଜ । ବର୍ଷକର ଛୁଆ ସିଏ — ମାଆର ଆକର୍ଷଣ ତା ପାଇଁ ସବୁଠୁ ବେଶୀ । ଦିନସାରା ଶୁଭ୍ରା ହସପିଟାଲରେ କଟାଏ । ସନ୍ଧ୍ୟାବେଳେ ଫେରିଆସେ । ଓଃ ଆଜି କାହିଁକି ଛୁଆଟା ଅତି ବ୍ୟସ୍ତ କରୁଛି । ଗାଧୁଆ ଘରେ ସାୱାର ତଳେ ଠିଆହୋଇ ଶୁଭ୍ରା ଭାବୁଥିଲା । ଆଜି ନିଶ୍ଚୟ ଶାଶୁ ବିରକ୍ତ ହେବେ, କହିବେ ଏତେ ଡେରି କରିଦେଲୁ । କିଛି ଉତ୍ତର ଦେଇ ପାରିବନି ସିଏ । ଶାଶୁଙ୍କର ମଧ୍ୟ ବୟସ ହୋଇଗଲାଣି... ସବୁ ଶାଶୁଙ୍କ ପରି ସେ ମଧ୍ୟ ସୁଧାଂଶୁର ଏ ଦୁରବସ୍ଥା ପାଇଁ ଶୁଭ୍ରାକୁ ହିଁ ଦାୟୀ କରନ୍ତି... ଅମଙ୍ଗଳୀ ଟାଏ... ମୋ ଘରକୁ ନଷ୍ଟ କରିଦେଲା ।

ମାଆ ଜଳଖିଆ ରେଡି... ଯଲଦି ଆସ... ତେଣେ ବଡମା ବ୍ୟସ୍ତ ହେଉଥିବେ ଯେ... । ତରବର କରି ଗାଧୁଆ ଶେଷ କରି ବାହାରି ଆସେ ସେ । ଓଃ ଭାରି କଷ୍ଟ ଏ ଜୀବନ । ଏପଟେ କୁନ୍‌ମୁନ୍ ଜଂଜାଳ, ସେପଟେ ଶାଶୂ ମା'ଙ୍କର ଶାସନ... ସବୁକିଛି ସହିବାକୁ ପଡୁଛି ଏ ଛୁଆଟା ଲାଗି ।

ବାହାରେ କଲିଂବେଲର ଘଣ୍ଟି ଶୁଭୁଛି । ସକାଳୁ ସକାଳୁ ପୁଣି କିଏ ? ସୁଧାଂଶୁ ହସପିଟାଲ ଗଲା ପରଠାରୁ ପ୍ରାୟ ବାହାରର ଲୋକ କେହି ଆସନ୍ତି ନାହିଁ । ଆଗରୁ ହସପିଟାଲରେ ମଧ୍ୟ ଭିଡ ଜମୁଥିଲା, ଏବେ ସେମିତି ନାହିଁ... ସବୁ କିଛି ଯେମିତି ବଦଳି ଯାଇଛି ଏଇ କେଇଟା ଦିନ ଭିତରେ । କେବଳ କ୍ଷୀର ବାଲା, କେବୁଲ୍ ବାଲା, ଇଲେକ୍‌ଟ୍ରି ବାଲା ଆଉ ଧୋବା ଛଡା ଏ ଘରକୁ ଆଉ କିଏ ଆସି ନାହିଁ । ସେମାନଙ୍କର ଦେୟ ଦିଆ ସରିଛି । ଆଉ ଏତେ ସକାଳୁ ପୁଣି କିଏ ? ମଝିରେ ତାର ବାପା ବୋଉ ଆସୁଥିଲେ । ଝିଅର ଭଲମନ୍ଦ ବୁଝୁଥିଲେ । ବାପା ଚାଲିଗଲା ପରେ ବୋଉ ଆଉ ଆସେ ନାହିଁ । ଗାଁରେ ରହୁଛି । ଗୋଟିଏ ବୋଲି ଝିଅର ଦୁରବସ୍ଥା କଥା ଭାବି ସେ ନିଶ୍ଚୟ

ଆଖିରୁ ଲୁହ ଝରାଉ ଥିବ । ଦୁନିଆରେ କେବଳ ବାପା ମାଆମାନେ ପିଲାଙ୍କର ଦୁଃଖ ବୁଝନ୍ତି । ସେମାନଙ୍କର ଧାରଣା ଝିଅ ବାହାହେଲା ପରେ ମୁଣ୍ଡ ଉପରୁ ତାଙ୍କର ବୋଝଟିଏ ଓହ୍ଲାଇଯାଏ । ଛାଡ ସେମାନେ ତାଙ୍କର କର୍ତ୍ତବ୍ୟ କରିଗଲେ । ବଡ ଘରର ବୋହୂ ସିଏ । ସବୁ ଥାଇ କିଛି ନାହିଁ ଶୁଭ୍ରାର ।

ବାହାରେ କ୍ରମାଗତ ଘଣ୍ଟି ବାଜିବା ଶବ୍ଦଟା ଶୁଭୁଛି, ବିରକ୍ତିକର ବୋଧ ହେଲା । ଏପଟେ ସମୟ ହୋଇ ଯାଇଛି । ତରତର ହୋଇ ଟିଫିନ ବକ୍ସଟାକୁ ହାତରେ ଧରି ଦଉଡି ଯାଇ କବାଟକୁ ଖୋଲିଦେଲା.... ।

'ଆରେ ଶେଖର....? ତମେ ଏ ଅସମୟରେ.... ? ହ୍ୱାଟ ଏ ସରପ୍ରାଇଜ୍... ତମେ ତ ଏ ସହରରେ ନଥିଲ... ପୁଣି ଅଚାନକ.... । ଆସିଲା ପୂର୍ବରୁ ଅନ୍ତତଃ ପକ୍ଷେ ଫୋନଟାଏ ତ କରିଦେଇ ଥାନ୍ତ ? ହଉ ହଉ ଭିତରକୁ ଆସ, ମୁଁ ଟିକେ ବ୍ୟସ୍ତରେ ଅଛି ।'

'ମୁଁ ଜାଣେ ଶୁଭ୍ରା ତମେ ବର୍ତ୍ତମାନ ବ୍ୟସ୍ତରେ ଥିବ । ଆଉ ସେଇଥିପାଇଁ ମୁଁ ତୁମକୁ ନ ଜଣାଇ ଚାଲିଆସିଲି । ହଉ ମୁଁ ଯାଉଛି... ପୁଣି ଆସିବି... ।'

'ଆରେ ନାଇଁ ନାଇଁ... ମୁଁ ଟିକିଏ ହସପିଟାଲ ବାହାରିଥିଲି... ତମ ସାଙ୍ଗରେ ଅନେକ ଦିନ ପରେ ଦେଖା... ତମେ ବସ ତମ ପାଇଁ କପେ ଚାହା କରି ଆଣେ ।'

ଶେଖର କିଛି କହିଲା ପୂର୍ବରୁ ଶୁଭ୍ରା ଭିତରକୁ ଚାଲି ଯାଇଥିଲା । ଆରପଟ ଘରୁ କୁନ୍‌ମୁନ୍‌ର କାନ୍ଦଣାର ଶବ୍ଦ ଶୁଭୁଥିଲା । ଆଉ ତା ସାଂଗରେ ଆୟାର 'ଧୋରେ ବାୟା ଧୋ' ଗୀତର ଲହରି ମଧ୍ୟ ଶୁଭୁଥିଲା ।

ଶେଖର ଡ୍ରଇଁ ରୁମରେ ବସି ଶୁଭ୍ରାର ରୁଚିକୁ ପରଖୁଥିଲା । ସୁନ୍ଦର ତୈଳଚିତ୍ର ମାନ କାନ୍ଥରେ ଶୋଭା ପାଉଥିଲା... ସୋଫା ସେଟ ମଧ୍ୟ ବେଶୀ ଦାମୀ ମନେ ହେଉଥିଲା... ଝରକା ଏବଂ କବାଟରେ ଲାଗିଥିବା ପରଦା ସୂଚାଇ ଦେଉଥିଲା ତାର ଏବଂ ସୁଧାଂଶୁର ରୁଚି ସଂପର୍କରେ । ଯେତେହେଲେ ଶୁଭ୍ରା ଜଣେ କଂପାନୀ ଏକ୍‌ଜିକ୍ୟୁଟିଭର ସ୍ତ୍ରୀ ।

ଶୁଭ୍ରାର ବାହାଘର ପରେ ଶେଖର ଆଜି ପ୍ରଥମଥର ପାଇଁ ଏ ଘରକୁ ଆସିଥିଲା । ସାମନାରେ ଶୁଭ୍ରା ଏବଂ ସୁଧାଂଶୁଙ୍କର ଏକ ବିରାଟ ଫଟୋ । ହଠାତ ତାର ଭାବନ୍ତର ହେଲା । ହଠାତ ଶେଖରର ହୃଦୟରେ ଏକ ଅଜଣା କଂପନ ଖେଳିଗଲା । ଏଇ ଶୁଭ୍ରାକୁ ନେଇ ସେ କମ ସ୍ୱପ୍ନ ଦେଖୁନଥିଲା... ଯଦିଓ ସେମାନେ ଦୁହେଁ ଏ ବିଷୟରେ

ସିଧା କଥାବାର୍ତ୍ତା କେବେ କରିନଥିଲେ । ଶୁଭ୍ରା ତାଙ୍କର ସହପାଠିନୀ ଥିଲା । ଅନେକ ସମୟରେ ସେମାନେ କଲେଜରେ ଏକାଠି କଟାଉଥିଲେ । କ୍ଲାସ ରୁମରେ, ଲାଇବ୍ରେରୀରେ, କଲେଜ ଲନ୍‌ରେ ଏପରିକି ସାଙ୍ଗ ହୋଇ ପିକ୍‌ନିକ ମଧ୍ୟ ଯାଇଥିଲେ । ଶୁଭ୍ରା ଦେଖିବାକୁ ସୁନ୍ଦରୀ ଥିଲା ଏବଂ ତାର ବାପା ଜଣେ ପଦସ୍ଥ କର୍ମଚାରୀ ଥିଲେ । ଶେଖର କିନ୍ତୁ ଜଣେ ସାଧାରଣ ପରିବାରରୁ ଆସିଥିଲା... । ଶୁଭ୍ରାର ବାପା ଶେଖରର ବେଶୀ ଯିବା ଆସିବାକୁ ପସନ୍ଦ କରୁ ନଥିଲେ । ଶୁଭ୍ରା ଏକମାତ୍ର ଝିଅ ହୋଇଥିବାରୁ ତାର ସ୍ୱାଧୀନତାରେ ସେମାନେ କୌଣସି ବାଧା ଦେଉନଥିଲେ । ଶୁଭ୍ରାର ପାଠ ପଢା ସରିଲା ମାତ୍ରେ ସେମାନେ ଲାଗିପଡିଲେ ତାର ବାହାଘର କରିବାପାଇଁ । ସେତେବେଳକୁ ସୁଧାଂଶୁ ବିଦେଶରୁ କଂପାନୀ ତରଫରୁ ଟ୍ରେନିଂ ନେଇ ଫେରିଥାଏ । ସୁଧାଂଶୁର ବାପା ଶୁଭ୍ରାର ବାପାଙ୍କର ବନ୍ଧୁ । ଶୁଭ୍ରାର ବାପା କିଛି ନିଷ୍ପତ୍ତି ନେବା ପୂର୍ବରୁ ଶୁଭ୍ରାର ମତାମତ ଲୋଡିଲେ । ଶେଖର ସେତେବେଳେ କୌଣସି ଚାକିରୀ ନ ପାଇ ଏ ସହରରୁ ସେ ସହରକୁ ହେଉଥାଏ । ଶୁଭ୍ରାକୁ ସେ କିନ୍ତୁ ବାରମ୍ବାର ଚିଠି ଲେଖୁଥାଏ । ଖୁବ ଶୀଘ୍ର ଚାକିରୀଟିଏ ମିଳିଯିବ ଏବଂ ତାପରେ ଯାଇ ଶୁଭ୍ରାକୁ ବାହାହେବା କଥା କହିବ.... ଏ କଥା ମନେ ମନେ ସ୍ଥିର କରିଥାଏ ଶେଖର । ଏ ଭଳିଆ ଏକ ଦୌଦୁଲ୍ୟମାନ ସ୍ଥିତିରେ ପଡିଯାଇ ଶୁଭ୍ରା ବାହାହୋଇଗଲା ସୁଧାଂଶୁକୁ । ଅବଶ୍ୟ ଘର ଦ୍ୱାର ମାନସମ୍ମାନରେ କିଛି କମନଥିଲା ସୁଧାଂଶୁ । ଦେଖିବାକୁ ସୁଧାଂଶୁ ଖୁବ୍ ଭଲ ।

ଭିତରପଟୁ ନୂପୁରର ରୁଣୁଝୁଣୁ ଶବ୍ଦ ଶୁଣି ସମ୍ବିତ ଫେରି ପାଇଲା ଶେଖର । ହାତରେ ଦୁଇ କପ ଚାହା ଧରି ପଦ କ୍ଷେପଣରେ ଆସିଲା ଶୁଭ୍ରା - 'ଏଇ ନିଅ ତମର ଲେମନ ଟି.... ।'

'ଓଃ ତମେ ତା ହେଲେ କିଛି ଭୂଲିନା ଶୁଭ୍ରା ।'

'ଜୀବନର ଚଲାପଥରେ ଏମିତି କିଛି କିଛି ଅଭୁଲା ସ୍ମୃତି ରହିଯାଏ ଯେମିତି ତମର ମୋ ଭିତରେ ଗଢି ଉଠି ପୁନଃ ଭାଙ୍ଗି ଯାଇଥିବା ସଂପର୍କର ସେତୁ ।' ହଠାତ ଚମକି ଉଠିଲା ଶେଖର ।

'ମୁଁ ଜାଣେ ଶୁଭ୍ରା ତମେ ନିଶ୍ଚୟ ହସପିଟାଲ ବାହାରିଛ ।'

'ମୁଁ ମଧ୍ୟ ଜାଣେ ତମେ ବଡ ବ୍ୟସ୍ତତାରେ ଅଛ ।'

'ମୁଁ ଖାଲି ତମର ଦୁଃଖରେ ସମବେଦନା ଜଣାଇବାକୁ ଆସିଥିଲି ।'

'ଓ ତାହେଲେ ସୁଧାଂଶୁ ବିଷୟରେ ତମେ ସବୁ ଖବର ରଖିଛ ?'

'ଖାସ ସେଇଥିପାଇଁ ମୁଁ ଦିଲ୍ଲୀରୁ ଚାଲି ଆସିଛି ।'

'ଏ ସବୁ କେମିତି ହେଲା ଶୁଭ୍ରା ?'

'ତମକୁ ଏ ଖବର କିଏ ଦେଲା ଶେଖର ?' ଶୁଭ୍ରା ପଚାରିଲା ।

'ରମେଶ ସାକ୍‌ସେନା, ତା କଂପାନୀର କଲିଗ ।'ସେ ଦିଲ୍ଲୀରେ ରୁହେ ।

କିଛି ସମୟର ନୀରବତା

'ମୁଁ ତା ହେଲେ ଆସୁଛି ଶୁଭ୍ରା, ଯଦି କିଛି ଦରକାର ପଡେ... ଖବର ଦେବ । ମୁଁ ବର୍ତ୍ତମାନ ଏହିଠାରେ ତମରି ସହରରେ କିଛିଦିନ ଅଛି... ତା ପରେ ଚାଲିଯିବି ମୋ କର୍ମସ୍ଥଳୀକୁ ।'

ଶୁଭ୍ରା ଭାବୁଥିଲା ଶେଖରର ହାତଧରି କିଛି ସମୟ ବସାଇ ଦେବାପାଇଁ, କିନ୍ତୁ ସେମିତି କିଛି କଲାନାହିଁ । ଶେଖର ଆଗେ ଆଗେ କବାଟ ଖୋଲି ବାହାରକୁ ଚାଲିଗଲା । ଏପରିକି ବାଟୋଇ ଦେବା ପାଇଁ ମଧ୍ୟ ଶୁଭ୍ରା ଦୁଆର ପର୍ଯ୍ୟନ୍ତ ଗଲାନାହିଁ । କାହିଁକି ଯାଇଥାନ୍ତା ଯେ.... ସେ ସବୁ ଅତୀତର ସ୍ମୃତି । ହଜିଯାଇଛି ସେ ସ୍ମୃତି... ମନ ଯାଇ ସମୁଦ୍ରର ଢେଉରେ.... ଅତଳ ଗହ୍ୱରରେ ।

ଚାହା କପଟା ସେଇମିତି ଥୁଆହୋଇଥିଲା ଟିପୟ ଉପରେ । ଶେଖର କପ୍‌ଟିକୁ ମୁହଁ ପାଖକୁ ମଧ୍ୟ ନେଇ ନ ଥିଲେ.... ।

ରାସ୍ତା ଉପରକୁ ଚାଲିଆସି ଶୁଭ୍ରା ଅଟୋଟାଏ ଧରିଲା । ବାଟସାରା ଖାଲି ଶେଖର କଥା ହିଁ ଭାବିଚାଲିଲା । ଲୋକଟା ପଇସାବାଲା ନଥିଲା ହେଲେ ହୃଦୟରେ ଅନେକ ପ୍ରେମ ଥିଲା ଯାହାକୁ କି ପଇସାରେ ମାପି ହୁଏନା । ତାର ପ୍ରେମକୁ ହୁଏତ ଠିକ୍ ଭାବେ ବୁଝି ପାରିନଥିଲା ଶୁଭ୍ରା - ଆଜି ସେଇଥିପାଇଁ କଂପାନୀ ଏକ୍‌ଜିକ୍ୟୁଟିଭ ସୁଧାଂଶୁ ରାୟ ଚୌଧୁରୀକୁ ବାହା ହୋଇ ମଧ୍ୟ ସେ ଶେଖରକୁ ଭୁଲି ପାରୁ ନଥିଲା । ଅବଶ୍ୟ ସେଥିରେ ସୁଧାଂଶୁର ବା କଣ ଭୁଲ - ସେ ତ ଶୁଭ୍ରାକୁ ପ୍ରେମ ଦେବାରେ କାଣିଚାଏ କାର୍ପଣ୍ୟ କରିନାହିଁ । ସବୁ ଦୋଷ ତାର ।

ହସପିଟାଲ କରିଡ଼ରରେ ଦେଖାହେଲା ଡକ୍ଟର ମୂର୍ତ୍ତୀଙ୍କ ସହ... ଡକ୍ଟର ମୂର୍ତ୍ତୀ ହସପିଟାଲର ମୁଖ୍ୟ ଚିକିତ୍ସକ.... ଡାକ୍ତର ହିସାବରେ ତାଙ୍କର ଭଲ ନା ଅଛି । ବିଦେଶରୁ ସଦ୍ୟ ଟ୍ରେନିଂ ନେଇ ଫେରିଛନ୍ତି ସେ... ଶୁଭ୍ରା ବଡ ବ୍ୟସ୍ତ ହୋଇ ପଚାରିଲା 'ସାର ଆଜି କେମିତି ଅଛନ୍ତି ସେ... ଭଲ ହୋଇ ଯିବେ ତ ?' ଡକ୍ଟର ମୂର୍ତ୍ତୀ ଶୁଭ୍ରାର ପିଠି ଥାପୁଡାଇ କହିଲେ, 'ଆମେ ତ ଚେଷ୍ଟା କରୁଛୁ ଫଳାଫଳ ଭଗବାନଙ୍କ ହାତରେ । ତମେ ଭଗବାନଙ୍କୁ ଡାକ, ସେ ଚାହିଁଲେ ଅସମ୍ଭବକୁ ସମ୍ଭବ କରିପାରିବେ ।' ଡକ୍ଟର ମୂର୍ତ୍ତୀ ଚାଲିଗଲେ... ଶୁଭ୍ରାର ଆଖିରୁ ତାର ଅଜାଣତରେ ଦୁଇଟୋପା ଲୁହ ବୋହିଗଲା...ଡକ୍ଟର ମୂର୍ତ୍ତୀ କଣ

ଏମିତି ସବୁ କହିଗଲେ ଯେ ?

କ୍ୟାବିନର କବାଟ ଖୋଲା ଥିଲା - ଶୁଭ୍ରା ଜାଣିଥିଲା ଶାଶୁ ବ୍ୟସ୍ତ ହୋଇ ବାହାରକୁ ଚାଲି ଆସିଥିବେ । ଘରେ ତାଙ୍କର ନାରାୟଣଙ୍କ ମୂର୍ତ୍ତୀ... ତାଙ୍କୁ ପୂଜାବେଳେ ଶାଶୁ କହିବେ ନାହିଁ.... ଆଜି ସବୁକିଛିର ବିଘ୍ନ ଘଟୁଛି.... ବେଳେବେଳେ ଶୁଭ୍ରା ଭାବୁଥିଲା ଯଦି କୁନ୍‌ମୁନ୍ ତାକୁ ହଇରାଣ କରି ନଥାନ୍ତା....ଯଦି ଶେଖର ଆସି ନଥାନ୍ତେ.... ।

'ବୋହୂ ! ତୁ ଏତେ ଡେରି କରିଦେଲୁ ମା ? ହଉ ଯାଆ ଭିତରକୁ ଯାଆ... ସୁଧାକୁ ଭୋକ ହେଲାଣି.... ସେ ତୋତେ ହିଁ ଅପେକ୍ଷା କରିଛି । ମୁଁ ଯାଏ ତେଣେ ପୂଜାର ବେଳ ଗଡିଯାଉଛି ଯେ ?' ଶୁଭ୍ରା ଜାଣିଥିଲା ଏ ସବୁର କାରଣ ସେ ନିଜେ - ଶାଶୁଙ୍କୁ କୌଣସି ଉତ୍ତର ନଦେଇ ନୀରବରେ କ୍ୟାବିନ ଭିତରକୁ ପ୍ରବେଶ କଲା ।

ଖଟ ଉପରେ ବସି ନୀରବରେ ଆଲବମରୁ ଫଟ ସବୁ କାଢି ଦେଖିବାରେ ନିମଗ୍ନ ଥିଲା ସୁଧାଂଶୁ । ଆଖିରୁ ଅନବରତ ଝରି ଚାଲିଥିଲା ଅଶ୍ରୁ । ସବୁ କିଛି ଘଟିଯାଇଥିଲା । ଶୁଭ୍ରାର ପାଦଶବ୍ଦ ଶୁଣି ଉଠି ପଡୁଥିଲା ସୁଧାଂଶୁ । ଶୁଭ୍ରା ଧରିପକାଇଲା । ଫଟୋ ସବୁ ଆଲବମରୁ ଖସି ପଡିଲା । ସୁଧାଂଶୁ ସେଇ ଲୁହ ବୋଳା ଆଖିରେ ପ୍ରଶ୍ନ କଲା, 'କୁନ୍‌ମୁନ୍‌କୁ ଆଣିଲନି ?' 'ତାରି ପାଇଁ ତ ଏତେ ଡେରି.... ତାର ସବୁ କାମ ସାରିଲା ବେଳକୁ ଡେରି ହୋଇଗଲା । ମାଆ ବିରକ୍ତ ହୋଇଥିବେ - ମୁଁ କଣ କରିବି କୁହ, କାଲି ରାତିରେ ଟୋକିଟା ମୋତେ ହେଲେ ଶୁଆଇ ଦେଲା ନାହିଁ - ପାହାନ୍ତିଆ ପହରକୁ ତାକୁ ନିଦ ହେଲା .... ତରତରରେ ଭଲ କରି କିଛି ତିଆରି କରି ପାରିଲି ନାହିଁ ।'

ସୁଧାଂଶୁ ହସିଲା ।

ତା ହସରେ କେମିତି ସରସତା ନଥିଲା ପରି ମନେ ହେଉଥିଲା ଶୁଭ୍ରାର ।

ସୁଧାଂଶୁ ଫଟୋ ସବୁକୁ ତୋଳି ଧରିଲା ଶୁଭ୍ରା ଆଗରେ । 'ମନେ ଅଛି ନା ତମର - ଆମ ବିବାହ ବେଳର ଫଟ ସବୁ । ଆମ ହନିମୁନ୍‌ର ଫଟସବୁ । କାଶ୍ମୀର ଡାଲ ଲେକ - ଆଉ ଶୀକାର - ଆଉ କାଶ୍ମୀର ପ୍ରେସରେ ତମେ ଯେମିତି ପରିଟିଏ ପରି ଦେଖାଯାଉଛ । ଆଉ ଏ ଫଟଟା ଦେଖ ଆମ ବାହାଘରର - ବ୍ରାହ୍ମଣ କେମିତି ମନ୍ତ୍ର ପଢି ଶୁଣାଉଛନ୍ତି... ସତରେ ଏ ମନ୍ତ୍ର ଫନ୍ତ୍ରରେ ତମେ ବିଶ୍ୱାସ କର ଶୁଭ୍ରା । ସମସ୍ତେ କହନ୍ତି ଯୁଗ୍ମ ଜୀବନ ସାର୍ଥକ ହେବ । ହେଲେ ମୋର ଜୀବନଟା ଯେ ବ୍ୟର୍ଥ ହୋଇଗଲା, କଣ ବା ମୁଁ ଦେଲି ତମକୁ ? ଖାଲି ବ୍ୟର୍ଥତା, ହାହାକାର..... ଆଉ ଦୁଃଖ । ଦୁଃଖିନୀ ମାଆଟା ମୋର ଖାଲି କାନ୍ଦୁଛି.... ସମସ୍ତେ କୁହନ୍ତି ପୁଅ ଜନ୍ମ କଲେ ଜୀବନ ସାର୍ଥକ ହୁଏ...କିନ୍ତୁ

କଣ ହେଲା ଏସବୁ... କାହିଁକି ହେଲା ? କାଲି ଡକ୍ଟର ମୂର୍ତ୍ତୀ କଣ ସବୁ ମାଆକୁ କହୁଥିଲେ ?'

'କଣ ସବୁ ଇଆଡୁ ସିଆଡୁ ଗପି ଚାଲିଛ ? ତମର ଦେହ ଭଲ ନାହିଁ। ଡାକ୍ତର କହିଛନ୍ତି କମ କଥା କହିବାକୁ । ବେଶୀ ଗୁଡାଏ ବକ୍ ବକ୍ ହେଲେ ଶ୍ୱାସ ବାହାରିବ - ତମେ ଚୁପ ଚାପ ଶୋଇ ରୁହ, ମୁଁ ତମକୁ ଖୁଆଇ ଦିଏ ।'

ତିନିମାସଧରି ବିଛଣାରେ ପଡିରହିଛି ସୁଧାଂଶୁ.... ଧୀରେ ଧୀରେ ତାର ବନ୍ଧୁ ବାନ୍ଧବମାନଙ୍କର ଆସିବା କମିଗଲାଣି - ଏଇଟା ସଂସାରର ନିତି ଦିନିଆ କଥା । ସେଦିନ ସୁଧାଂଶୁର ବସ୍ ଆସିଥିଲେ.... ଛୁଟି ପରେ ଛୁଟି ବଢାଇ ଚାଲିଛି ସୁଧାଂଶୁ... କିନ୍ତୁ କେତେଦିନ.... ।

ଶୁଭ୍ରା ସୁଧାଂଶୁର ଦେହ ହାତ ପୋଛି ଦେଲା... ରାତିର ଡ୍ରେସ କାଢିଦେଲା... ସଫା ଡ୍ରେସ ପିନ୍ଧାଇ ଦେଲା... ଟିଫିନ କାରିୟର ଖୋଲି ତାକୁ ଜଳଖିଆ ଖୁଆଇଦେଲା ।

ଟେବୁଲ ଉପରେ ଥୁଆହୋଇଛି ଗୁଡାଏ ଔଷଧ - ପ୍ରେସକ୍ରିପସନରେ ଲେଖା ହୋଇଛି କାହାପରେ କେଉଁଟା ଖାଇବା ପାଇଁ । ସୁଧାଂଶୁ ଶୁଭ୍ରାର ହାତଧରି ପକାଇଲା - କହିଲା 'ଆଉ ସେଗୁଡା ମତେ ଗିଳାଅ ନାହିଁ । ବାନ୍ତି ହୋଇଯିବ । ସତରେ ଶୁଭ୍ରା ଖାଲି ଗୁଡାଏ ଔଷଧ ଖାଇ ଖାଇ ଦେହଟା ଏକଦମ ମେଡିକଟେଡ ହୋଇଗଲାଣି.... ଆଉ ମାଉନି.... । ଡାକ୍ତର କହିଛନ୍ତି ଏଥର ଔଷଧ ବଦଳାଇ ଦେବେ । ହଁ ଶୁଭ୍ରା ଘରକୁ କିଏ ସବୁ ଆସୁଛନ୍ତି.... ଆୟା କୁନ୍‌ମୁନ୍‌ର ଯତ୍ନ ନେଉଛି କି ନାହିଁ ? ତମେ ସତରେ ଦୁର୍ବଳ ହୋଇଗଲଣି - ତମର ଯତ୍ନ ନେବାକୁ କେହି ନାହାନ୍ତି । ଶୁଭ୍ରା, ଭଗବାନ ବୋଧେ ଆମ ସୁଖ ସହିପାରିଲେନି.... ।' ଶୁଭ୍ରା ଅନୁଭବ କଲା ସୁଧାଂଶୁ ଉତ୍ତେଜିତ ହୋଇ ପଡୁଛି.... ତାର କଣ୍ଠସ୍ୱର ଥରି ଉଠୁଛି ।

ଶୁଭ୍ରା ସୁଧାଂଶୁର ପାଟିରେ ହାତ ଦେଇ ଚୁପ କରାଇଦେଲା.... କହିଲା 'ଡାକ୍ତର ମନା କରିଛନ୍ତି ଉତ୍ତେଜିତ ହେବାକୁ - ହାର୍ଟ ଉପରେ ପ୍ରେସର ପଡିବ - ତମର ତ ବ୍ଲଡ ପ୍ରେସର ଏକଦମ ହାଇ ଅଛି.... ବ୍ଲଡ ପ୍ରେସର କଣ୍ଟ୍ରୋଲ ହେଲେ ତମକୁ ନେଇ ହାଇଦ୍ରାବାଦ ଯିବାକୁ ପଡିବ.... ହଁ ଘରକୁ ଶେଖର ଆସିଥିଲା.... ତମ କଥା କେଉଁଠୁ ଶୁଣିଥିଲା.... ପୁଣି କହିଛି ଆସି ତମକୁ ଦେଖିଯିବ ବୋଲି - ଦିଲ୍ଲୀରେ ଅଛି ସେ ।'ଓଃ, ଚିତ୍କାର କରି ଉଠିଲା ସୁଧାଂଶୁ.... 'ଓଃ ଓଃ ଶୁଭ୍ରା ମତେ ଧର... ମୋ ଛାତି କଣ ହୋଇଯାଉଛି - ମତେ ଧର ଶୁଭ୍ରା...ମୋତେ ଚାପିଧର....ଓଃ ମୋ ଛାତି... ମୋ

ଛାତି.... ଶୁଭ୍ରା.... ଡାକ୍ତର... ମାଆ... କୁନ୍‌ମୁନ୍....ଓଃ ମୋ ଦେହ ।' ଶୁଭ୍ରା ଚିତ୍କାର କରି ଉଠିଲା....'ମୁଁ କଣ କରିବି ହେ ଭଗବାନ.... ଡାକ୍ତର ନର୍ସ.... । ଆରେ ତମର ହାତ ଦେହ ସବୁ ଥରୁଛି କାହିଁକି ? ଆରେ ଏସବୁ କଣ ଥଣ୍ଡା ହୋଇ ଗଲାଣି.... ।'

କ୍ଷଣିକ ମଧ୍ୟରେ ସୁଧାଂଶୁ ଚୁପ୍ ହୋଇଗଲା.... । ଆଖି ଡୋଳା ତାର ସ୍ଥିର ହୋଇଗଲା । ଚୁପ ହୋଇଗଲା ସବୁଦିନ ପାଇଁ... । ପାଖ ଘରୁ ଦଉଡି ଆସିଲେ ଡାକ୍ତର ଏବଂ ନର୍ସ.... । 'ଛାତି ଉପରେ ହାତ ଦେଇ କହିଲେ... ଆଇ ଆମ ସରି....।' ଶୁଭ୍ରା କାନ୍ଦୁଥିଲା, ପିଲାଙ୍କ ପରି । କିଏ ତାକୁ ସାହାହେବ, ଶାଶୁ ନା କୁନ୍‌ମୁନ୍....ନା.... ?

❖

# ପାଦ ଖସିଯାଇଛି

ସେଦିନ ସବୁ ଅନୁମାନକୁ ଭୁଲ୍ ବୋଲି ପ୍ରମାଣିତ କରି ନିର୍ଦ୍ଦିଷ୍ଟ ସମୟରେ ଭୁବନେଶ୍ୱର ଷ୍ଟେସନର ଏକ ନମ୍ବର ପ୍ଲାଟଫର୍ମରେ ଆସି ଲାଗିଥିଲା ପୁରୀ ହାଓ୍ୱଡ଼ା ଏକ୍ସପ୍ରେସ୍ । ପୁରୀକୁ ଆସିଲାବେଳେ ବାଟ ସାରା କିଛି କିଛି ଶିକୁଳୀ ଟଣାହୋଇ ଭୁବନେଶ୍ୱରରେ ପହଞ୍ଚିଲାବେଳକୁ ସାଧାରଣତଃ ଡେରି ହୋଇଯାଇଥାଏ । କିନ୍ତୁ ଆଜି ତାହାର ବ୍ୟତିକ୍ରମ ଘଟିଛି । ପ୍ଲାଟଫର୍ମ ମଧ୍ୟ ଲୋକାରଣ୍ୟ କାରଣ ଏହି ଟ୍ରେନରେ ଯାତ୍ରା କରିବାକୁ ଲୋକମାନେ ପସନ୍ଦ କରିଥାନ୍ତି । ଚାହାବାଲା, ପାନବାଲା, ଜଳଖିଆ ବାଲା, ଖୁଚୁରା ବେପାରୀମାନଙ୍କର ଚିତ୍କାରରେ ଷ୍ଟେସନ ପଡୁଥାଏ ଉଠୁଥାଏ । ସେଇ ଭିଡ଼ ଭିତରେ କୌଣସିମତେ ନିଜର କୋଚ୍ ବାଛିନେଇ ଝରକା ପାଖ ବର୍ଥଟାକୁ ନିଜ ଅକ୍ତିଆରକୁ ନେଇଯାଇଥିଲା ସନ୍ଦିପ । ଝରକାର ବାହାରେ ଝରକାର ରେଲିଂକୁ ଧରି ପ୍ଲାଟଫର୍ମରେ  ଠିଆହୋଇଥିଲା ସୁନୟନା । ତାର ଗୋଟିଏ ହାତ ସନ୍ଦିପର ହାତକୁ ଚାପି ଧରିଥିଲା । ସନ୍ଦିପ କହୁଥିଲା ପଂଇଚାଳିଶ ଦିନ ପଂଇଚାଳିଶ ମିନିଟ୍ ପରି କଟିଗଲା । କିଛି ଜଣାପଡିଲା ନାହିଁ । କିନ୍ତୁ କଣ କରାଯିବ ! କଂପାନୀ ଚାକିରୀ । ବେଶୀ ଦିନ ଛୁଟି ନେବା ସମ୍ଭବ ହେଲା ନାହିଁ । ସୁନୟନା ଲୁହଭିଜା ଆଖିରେ କହୁଥିଲା - ତମେ ଏତେ ଯଲଦି ଚାଲିଆସିବ ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି । ମୋର କଲେଜରେ ଏମିତି ପଢ଼ା ହୁଏନି, ତେଣୁ ଛୁଟି ନେଇ ଯାଇଥିଲି । ଏବେ ଭାବୁଛି ଜଏନ୍ କରିଯିବି - ଆଉ କାହିଁକି ରହିବି ଯେ ? ଟ୍ରେନ୍ ଘଣ୍ଟି ବାଜିଲା, ଦୁଇପଟୁ ନୀଳ ପତାକା ହଲିଲା ଏବଂ ପଛପଟୁ ଆଗପଟୁ ଟାଟା ବାଏ ବାଏର ସ୍ୱର ଶୁଭିଲା । ସୁନୟନା ହଠାତ ଝଟକାଟାଏ ଖାଇ ପଡ଼ିଯାଇଥାନ୍ତା କି କଣ, କୌଣସି ମତେ ନିଜକୁ ସମ୍ଭାଳିନେଇ କହିଲା, 'ପହଂଚିଲା ମାତ୍ରେ ଚିଠି ଦେବ, ଫୋନ କରିବ ।' ସନ୍ଦିପ କିଛି କହିଲା ପୂର୍ବରୁ ଟ୍ରେନର ଗତି ବଢ଼ିଯାଇଥିଲା । ସୁନୟନା ହାତ ମଧ୍ୟ ଖସିଯାଇଥିଲା ସ୍ୱାଭାବିକ ଭାବରେ ।

ନିଜ ଅଜାଣତରେ ବେଶ୍ କିଛି ସମୟ ପ୍ଲାଟଫର୍ମରେ ଠିଆହୋଇ ରହିଥିଲା ସୁନୟନା । ହଠାତ୍ ଦେଖିଲା ସିଏ ଏକୁଟିଆ ହୋଇଯାଇଛି । ଟ୍ରେନ୍ ତା' ଆଖି ଉହାଡ଼ରୁ ଅଦୃଶ୍ୟ ହୋଇଗଲାଣି । ଏବେ କଟକ ଧରୁଥିବ । ଆସିଥିବା ଲୋକମାନେ ଚାଲିଗଲେଣି । ସୁନୟନା କ୍ଷିପ୍ର ଗତିରେ ପ୍ଲାଟଫର୍ମ ବାହାରକୁ ଆସିଲା । ପିନ୍ଧିଥିବା ଶାଢ଼ୀ ସଜାଡ଼ିଲାବେଳେ ସନ୍ଦିପ କଥା ମନେ ପଡ଼ିଗଲା । ସନ୍ଦିପ ଜମାରୁ  ତା ଶାଢ଼ୀକୁ

ସଜାଡ଼ିବାକୁ ଦିଏ ନାହିଁ । ଏଡ଼ିକି ଅଭଦ୍ର ସିଏ ! ରାତି ହେଲେ କଥାଟା ଅନ୍ୟ ପ୍ରକାର ହୋଇଯାଏ । ସନ୍ଦିପ ତାକୁ ସଂପୂର୍ଣ୍ଣଭାବେ ବସ୍ତ୍ରହୀନ କରିଦିଏ । ଯାଃ....

'ମା'... ଅଟୋ...?'

'ହଉ ଚାଲ... ।'

ଏଇ କିଛିଦିନ ହେବ ସେ 'ଇନ୍ଦିରାଗାନ୍ଧୀ କର୍ମଜୀବୀ ମହିଳା ନିବାସ'ରେ ରହୁଛି । କେହି ଜଣେ ଆମର ନାରୀ ନେତ୍ରୀ, ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ନାମରେ ଏହାକୁ ତିଆରି କରିଛି । ପ୍ରଧାନମନ୍ତ୍ରୀ କହୁଥିଲେ ନାରୀମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି ହେବା ଦରକାର, ନାରୀମାନେ ସ୍ୱାବଲମ୍ବୀ ହେବା ଦରକାର, ଏପରିକି ଚାକିରୀ କ୍ଷେତ୍ରରେ ମଧ୍ୟ ସେମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ରହିବା ଦରକାର । କେତେଦିନ ଏ ସମାଜ ପୁରୁଷ କବଳିତ ହୋଇ ରହିଥିବ - ତାରି ପ୍ରଚେଷ୍ଟାର ଚିହ୍ନ ସ୍ୱରୂପ ତିଆରି ହୋଇଛି କର୍ମଜୀବୀ ମହିଳା ନିବାସ ସେହି ମହୀୟସି ନାରୀ ଇନ୍ଦିରାଗାନ୍ଧୀଙ୍କ ପରେ ।

ଏଠି ପ୍ରାୟ ସତୁରି ଅଶୀ ଜଣ ମହିଳା ରୁହନ୍ତି... ସକାଳୁ ସଂଜ ଯାଏ ଗାର୍ଡ଼ମାନେ ପହରା ଦିଅନ୍ତି ଓ ବୁଝାଶୁଝା କରିବାକୁ ମାନେଜମେଣ୍ଟ ଅଛି - ହଷ୍ଟେଲର ଓ୍ୱାର୍ଡେନ ମଧ୍ୟ ଅଛନ୍ତି । ଅଧିକାଂଶ ମହିଳା ଚାକିରୀ କରନ୍ତି - କିଛି କିଛି ଛାତ୍ରୀ ମଧ୍ୟ ଅଛନ୍ତି ଯେଉଁମାନେ କଲେଜ ହଷ୍ଟେଲରେ ସିଟ୍ ପାଆନ୍ତି ନାହିଁ । ଏଠି ଦିନବେଳେ କେହି ରହନ୍ତି ନାହିଁ, ସମସ୍ତେ ନିଜ ନିଜର କର୍ମକ୍ଷେତ୍ରକୁ ଚାଲିଯାଆନ୍ତି । ସନ୍ଧ୍ୟା ପାଞ୍ଚଟା ଛଅଟା ବେଳକୁ ହଷ୍ଟେଲରେ ଗହଳି ଆରମ୍ଭ ହୋଇଯାଏ । ପରିଦର୍ଶକମାନଙ୍କ ପାଇଁ ସନ୍ଧ୍ୟା ଛଅଟାରୁ ଆଠଟା ସମୟ ନିର୍ଦ୍ଧାରଣ କରାଯାଇଛି । ସାମନାରେ ସରକାରଙ୍କ ତରଫରୁ ଏକ ମନୋରମ ପାର୍କ କରିଦିଆହୋଇଛି । ସନ୍ଧ୍ୟାବେଳେ ପାର୍କ ଲୋକାରଣ୍ୟ ହୋଇଯାଏ ।

ନିଜ ରୁମ୍‌ରେ ପହଞ୍ଚି ସୁନୟନା ପ୍ରଥମେ ଝରକା ସବୁକୁ ଖୋଲି ପକେଇଲା । ଖୋଲା ଝରକା ଦେଇ ରାତିର ଶୀତଳ ପବନ ଦଲକାଏ ଆସି ତାର ଦେହମନକୁ ଶୀତଳ କରିଦେଲା । ସୁନୟନା ନିଜର ଶାଢ଼ୀ ଓ ଅନ୍ତଃବସ୍ତ୍ରକୁ ଖୋଲିପକାଇ ବିଛଣା ଉପରେ ଫୋପାଡ଼ି ଦେଲା ଏବଂ ନାଇଟିଟିଏ ଗଳାଇ ପକାଇ ବାଥରୁମ୍‌କୁ ଚାଲିଗଲା । ବାଥରୁମ୍‌ରେ ପଶିଯାଇ ନାଇଟିଟିକୁ ଖୋଲିଦେଲା ଏବଂ ସାୱାର ତଳେ ଠିଆହୋଇ ପଡ଼ିଲା । ଆରେ ଯେ କଣ ଦେଖୁଛି ସିଏ ! ଦେହସାରା, ବେକଠୁ ଆରମ୍ଭ କରି କଟି ପର୍ଯ୍ୟନ୍ତ ସବୁଆଡ଼େ ଦାନ୍ତର କାମୁଡ଼ା ଚିହ୍ନ ! ଓହୋ ! ସନ୍ଦିପକୁ ଆଉ ପାରିହେବନି ।

ଏକାଥରକେ ଛଅ ମାସ ପାଇଁ ସବୁ ଦାଗ ଛାଡ଼ି ଯାଇଚି - ତଉଲିଆରେ ଯେତେ ଘଷିଲେ କଣ ସେ ଦାଗ ଯାଏ ! ହଉ, ଏଥର ସନ୍ଦିପ ଆସୁ ତାକୁ ନିଶ୍ଚେ ସେ ପାନେ ଦେବ । ଆଉ ସେ ଜମାରୁ ବସ୍ତ ଖୋଲିବ ନାହିଁ । କିନ୍ତୁ ସନ୍ଦିପ କଣ ତା କଥା ମାନିବ ! ନ ଖୋଲିଲେ ସେ ଯାଇ ତକିଆଟା ଉପରେ ମୁହଁ ମାଡ଼ି ଶୋଇବ । ରାତିରେ ବେଳେବେଳେ ସନ୍ଦିପଟା ପିଲା ହୋଇଯାଏ । ସୁନୟନାର ରାଗ କମିଯିବ, ସିଏ ସନ୍ଦିପକୁ ନିଜ ଆଡ଼କୁ ଟାଣିନେବ । ସୁନୟନାର ମନେହେଲା ଏଇ ଯେମିତି ସନ୍ଦିପ ତା' ପାଖରେ ଠିଆହୋଇଛି ଏବଂ ଦୁଷ୍ଟାମି କରୁଛି । ସୁନୟନା ଏଥର ସଓ୍ୱାର ବନ୍ଦକଲା ଏବଂ ନିଜ ରୁମକୁ ଫେରିଆସିଲା ।

ରୁମକୁ ଫେରି ହଠାତ୍ ପ୍ରକୃତିସ୍ଥ ହୋଇଗଲା ସିଏ । ଆରେ ! ପାଖ ଖଟ ଯେ ଖାଲି ! ରାତି ଦଶଟା ବାଜିଲାଣି ସୁରଭି ଏପର୍ଯ୍ୟନ୍ତ ଫେରିନି ! ସୁରଭି ବୟସରେ ତା'ଠାରୁ ସାନ । ସୁନୟନାକୁ ସେ ଅପା ବୋଲି ଡ଼ାକେ । କେଜାଣି କାହିଁକି ଝିଅଟା ପ୍ରତି ତା'ର ମାୟା ଆସି ଯାଇଥିଲା । ଝିଅଟା ଏକଦମ୍ ଫୁଲାଫାଙ୍କିଆ ହୋଇ ଯାଇଛି । ଗୋଟିଏ ବୋଲି ଝିଅ । ବାପା ମାଆ ଏଇ ଭୁବନେଶ୍ୱରରେ ରୁହନ୍ତି । ତଥାପି ଅଫିସ ପାଖ ବୋଲି କହି ସୁରଭି ଆସି ଏହି କର୍ମଜୀବୀ ମହିଳା ନିବାସରେ ଆଶ୍ରୟ ନେଇଛି । ଦିନ ରାତି ଘୂରି ବୁଲିବା ତା'ର ଗୋଟିଏ ଫେସନ । ଆଜି ନିଶ୍ଚେ କାହା ସାଂଗରେ ସିନେମା ଯାଇଥିବ, ଆଉ ଫେରି କହିବ, 'ମୁଁ ନା ଅପା ଆଜି ଏଇ ସିନେମା ଯାଇଥିଲି ।' ସୁରଭି ବୁଝିପାରେନା ସେ ଠିକ୍ କରୁଛି ନା ଭୁଲ କରୁଛି । ଯୁକ୍ତି ବାଢ଼େ, 'ଜୀବନ ଉପଭୋଗ କର, ମଉଜ ମଜଲିସ କର. ତା' ହେଲେ ସିନା ବୁଝିବ ଜୀବନର ମୂଲ୍ୟ ।' ସୁନୟନା ତାକୁ ବୁଝାଇବାକୁ ଚେଷ୍ଟାକରେ । ଅତ୍ୟଧିକ ସ୍ୱେଚ୍ଛାଚାରିତା ଯେ ତାକୁ କେତେବେଳେ ବିପଦରେ ପକାଇଦେବ ଏ ବିଷୟରେ ତାକୁ ସଚେତନ କରାଇ ଦେବା ପାଇଁ ଚେଷ୍ଟାକରେ ।

ସୁନୟନା ମଶାରୀ ଟାଣି ଶୋଇବାକୁ ଗଲାବେଳକୁ କବାଟରେ ଖଡ଼ ଖଡ଼ ଶବ୍ଦ ହେଲା । 'ମୁଁ ଜାଣେ ପରା ସେ ଟୋକୀ ନିଶ୍ଚୟ ଆସିଥିବ !'

'ଅପା ଅପା, ଓଃ ମୁଁ ଜାଣେ ପରା ତମେ ଜମାରୁ ଶୋଇନଥିବ । ମୋ ସୁନା ଅପା- ।' କବାଟ ଖୋଲୁ ଖୋଲୁ ସୁନୟନାର ବେକକୁ ଧରି ଓହଳି ପଡ଼ିଲା ସୁରଭି , 'ମୁଁ ଜାଣେ ପରା ତମେ ବର୍ତ୍ତମାନ ଗାଁରୁ ଆସିଛ, ଭାଇଙ୍କ ସାଙ୍ଗରେ ପୂରା ପଂଇଚାଳିଶ ଦିନ କଟାଇଛ । ଓଃ, ହାଉ ରୋମାଣ୍ଟିକ ! ଆଉ ମୁଁ ଏଠି ତମ ବିନା ମରୁଛି । ଅପା ପ୍ଲିଜ ତମେ ଆଜି ରାଗିବନି । ଆଜି ସେ ସରକାର ନା, ମୋ ବସ୍ ଦିଲିପ ସରକାର ମତେ ସିନେମା ଦେଖାଇ ନେଇଗଲା । ମୁଁ ଜାଣିନଥିଲି ସେଇଟା ଆଡ଼ଲ୍ଟ ପିକ୍‌ଚର ବୋଲି ।

ଆଉ ଦେଖୁନ ସେଇ ଅନ୍ଧାର ଭିତରେ... । ଓ ଅପା ସତରେ କିଛି ସମୟ ପାଇଁ ମୁଁ ନିଜକୁ ନିଜେ ଭୁଲିଗଲି ଆଉ ତାରି ସୁଯୋଗ ନେଇ ସେ ମୋ ଗାଲ ଓ ବେକରେ ଲାଲ ଦାଗ ସବୁ କରିଦେଇଛି, ନୁହେଁ ?'

ସୁନୟନା ଚୁପ୍‌ଚାପ୍ ବସି ଶୁଣୁଥାଏ । ସୁରଭି ଏଥର ଟିକିଏ ଲାଜେଇଗଲା । ଦର୍ପଣ ପାଖକୁ ଯାଇ ଚିତ୍କାର କଲା... 'ଓ ! ଇ ମା, କଣ ସେ କରିଛି ଯେ... କାଲି ମୁଁ କେମିତି ଅଫିସ୍ ଯିବି ଯେ... ?' ସୁନୟନା କହିଲା, 'ଖାଲି ଏତିକି,ଆଉ ଯଦି ଆଗକୁ ବଢ଼ିଲା ନା ସଇଲା କଥା । ମୁଁ ଜାଣେ ପରା ତମେ ସବୁ ଟୋକାଙ୍କ ହାବୁଡ଼େ ପଡ଼ିଲେ... । ତୁ ଜାଣିଛୁ ସୁରଭି ପୁରୁଷମାନେ ନା ଭ୍ରମର ଜାତି, ସହଜରେ ଗୋଟିଏ ଫୁଲରେ ତାଙ୍କ ଖୁସି ମେଣ୍ଟେ ନାହିଁ । ସେମାନେ ଉଡ଼ି ବୁଲନ୍ତି ଏ ଫୁଲରୁ ସେ ଫୁଲକୁ । ଫୁଲର ସରସତା ମଉଳିଗଲେ ସେମାନେ ତାକୁ ପାଦରେ ଦଳି ମକଚି ଦିଅନ୍ତି ଆଉ ଅଲଗା ଫୁଲର ସନ୍ଧାନରେ ବାହାରି ପଡ଼ନ୍ତି । ଏଥିପାଇଁ ବେଳ ଥାଉଁ ଥାଉଁ ଶିକୁଳୀର ବନ୍ଦୋବସ୍ତ କରିବା ଦରକାର । ଥରେ ଶିକୁଳୀରେ ବନ୍ଧା ହୋଇଗଲେ ତୁ ଆଉ ଏମିତି ଲଗାମଛଡ଼ା ହୋଇ ବୁଲିବୁନି ।' ସୁରଭି କଥା ଶୁଣୁ ଶୁଣୁ କେତେବେଳେ ନିଜ ବିଛଣାରେ ନିଦେଇ ଗଲାଣି । ସୁନୟନା ଲାଇଟ ଲିଭାଇଲା, କବାଟ ବନ୍ଦ କଲା, ପାଣି ପିଇଲା ଏବଂ ସେ ମଶାରୀ ଭିତରକୁ ପଶିଗଲା ।

'ଇନ୍ଦିରାଗାନ୍ଧୀ କର୍ମଜୀବୀ ମହିଳା ନିବାସ' ଖୁବ୍ ଅଳ୍ପ ଦିନ ହେଲା ତାର କାମ ଆରମ୍ଭ କରିଛି । ଖୁବ୍ ଅଳ୍ପ ଦିନରେ ବେଶ୍ ସୁନାମ ଅର୍ଜନ କରିଛି । ବେଶ୍ ଧନୀ ଘରର ପିଲାମାନେ ଏଠାରେ ରହିବାକୁ ଇଚ୍ଛା ପ୍ରକାଶ କରୁଛନ୍ତି । ଆଜିକାଲି ଝିଅପିଲାମାନଙ୍କର ରୁଚି ବଦଳି ଗଲାଣି । ସେମାନେ ଆଉ ଘର କଣରେ ଲୁଚି ରହିବାକୁ ପସନ୍ଦ କରୁନାହାନ୍ତି । ଯେଉଁ ଝିଅଟି ଭଲ ପାଠ ପଢ଼ିଲା ସିଏ ନିଜର କ୍ୟାରିୟର ଗଢ଼ିବାକୁ ବ୍ୟସ୍ତ । ତେଣୁ ଘରେ ରହିବାର ପ୍ରଶ୍ନ ଉଠୁଛି କୋଉଠୁ ! ଆଗକାଳରେ ଝିଅମାନେ ଘରେ ରହୁଥିଲେ, ପୁଅମାନଙ୍କ ରୋଜଗାର ଉପରେ ନିର୍ଭର କରୁଥିଲେ । ଏବେ ବେଳେବେଳେ ଝିଅମାନଙ୍କର ରୋଜଗାର ଉପରେ ପୁଅମାନେ ନିର୍ଭର କରୁଛନ୍ତି । ସମାଜରେ ପରିବର୍ତ୍ତନର ହାୱା ବୋହୁଛି । ପରିବର୍ତ୍ତିତ ପରିସ୍ଥିତିକୁ ଆଖି ଆଗରେ ରଖି ବାପାମାଆମାନେ ମଧ୍ୟ ନିଜ ଚିନ୍ତାଧାରାର ପରିବର୍ତ୍ତନ କରୁଛନ୍ତି ।

ଏହି ପରିବର୍ତ୍ତନର ସୁଅରେ ସାମିଲ ହୋଇଛି ସୁରଭି । ପିଲାଟି ଦିନରୁ ତା'ର ବାପାମାଆ ତାକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଛନ୍ତି । ସେ ଦେଖିବାକୁ ବେଶ୍ ସୁନ୍ଦରୀ । କିନ୍ତୁ ସୁରଭିର ମନୋଭାବ ଏକଦମ ଅଲଗା । ସିଏ ଏତେ ଶୀଘ୍ର ବିବାହ ବନ୍ଧନରେ ବାନ୍ଧି

ହେବାକୁ ଚାହେଁନା । ଏଣୁ ଭୁବନେଶ୍ୱରରେ ଘର ଥାଇ ମଧ୍ୟ ସିଏ ଆସି ହଷ୍ଟେଲରେ ରହୁଛି । ଖୋଲା ପବନରେ ବୁଲିବାକୁ ତାର ଖୁବ୍ ମନ । ଏଣୁ ସୁନୟନାର କଥାକୁ ସେ ପୁରୁଣା ଅମଳର କଥା ବୋଲି ଭାବି ଫୁଟୁକି ମାରି ଉଡ଼ାଇ ଦିଏ । କୁହେ, 'ଅପା ! ତମର ଯେଉଁ କଥା ନା ସେ ସବୁ ମରହଟ୍ଟୀ ଅମଳର । ତମେ ତ ଖାଲି ଓଢ଼ଣା ଭିତରେ ରହିଲ, ଓଢ଼ଣା ବାହାରେ ଯେ ଆଉ ଗୋଟିଏ ପୃଥିବୀ ଅଛି ତା କଣ ତମ ନଜରରେ ପଡ଼ିଛି ? ସେଠି ଯେ ଆଉ ଗୋଟିଏ ଜୀବନ ଅଛି ତାର ଖବର ତମେ ରଖିନା ।'

ବେଳେବେଳେ ସୁରଭି ନିଜ ଅଫିସ୍ କଥା ସୁନୟନା ଆଗରେ ଗପେ । କିପରି ତାର ସହକର୍ମୀମାନେ ତାକୁ ଲୋଲୁପ ଦୃଷ୍ଟିରେ ଦେଖନ୍ତି ଆଉ କିଭଳି ଭାବରେ ସେ ତାକୁ ବେଖାତିର କରେ, ତା'ର ବୟାନ କରେ । ଅଫିସ୍‌ର ବଡ଼ ବାବୁ ତାକୁ ବେଶ୍ ଉଦାର ଭାବରେ କୁହନ୍ତି, 'ଆମ ସୁରଭି ମଡ଼ାମ ଆଜି ଖୁସ୍ ତ ବସ୍ ମଧ୍ୟ ଖୁସ୍ । ଆଉ ଯେଉଁଦିନ ବସ୍‌ଙ୍କର ମୁଡ୍ ଅଫ ଆଉ ସେଦିନ ଦେଖିବ ସୁରଭି ମାଡ଼ାମଙ୍କର ମୁହଁ ଆମ୍ବିଳା ।' ଅଫିସରେ ଖୁବ୍ ଗୋଟାଏ ମିଳିତ ହସର ଗୁଂଜରଣ ଶୁଭେ । ସୁରଭି ଏମ.ଡ଼ି.ଙ୍କର ଷ୍ଟେନୋ । ଏଣୁ ବେଶୀ ସମୟ ସେ ତାଙ୍କ ପାଖରେ କଟାଏ । ଏପରିକି ବେଳେବେଳେ ସନ୍ଧ୍ୟା ପରେ ମଧ୍ୟ ତାକୁ ରହିବାକୁ ହୋଇଥାଏ । ସେଦିନ ସେହିଭଳି ଗୋଟାଏ ପରିସ୍ଥିତିରେ ସେ ସିନେମା ଦେଖିବାକୁ ଚାଲିଯାଇଥିଲା । ସୁନୟନା ତାକୁ ତାଗିଦ୍ କରିଦେଇଛି । ସୁରଭି ମଧ୍ୟ ଏବେ ନିଜେ ଟିକେ ଜଗିରଖି ଚଳୁଛି । ବେଳେବେଳେ ଭାବୁଚି ସୁନୟନା ଅପାର କଥାରେ କିଛିଟା ମହତ ଉଦ୍ଦେଶ୍ୟ ଅଛି । କିନ୍ତୁ ପୁଣି କିଛିଦିନ ପରେ ଯେଉଁ କଥାକୁ ସେଇ କଥା । ସୁରଭି ଭୁଲିଯାଏ ସେଇସବୁ କଥାକୁ ।

ସେଦିନ ପାଗ ବୋହଲା ଥିଲା । ଥଣ୍ଡା ପାଗ ସାଙ୍ଗକୁ ଅସରାଏ ଦୁଇ ଅସରା ବର୍ଷା ମଧ୍ୟ ହୋଇଯାଇଥିଲା । ବର୍ଷା ପାଗ ଦେଖି ସୁନୟନା କଲେଜ ଯାଇ ନଥିଲା । ଅଫିସକୁ ଫୋନ କରି ଜଣାଇ ଦେଇଥିଲା । ସନ୍ଧ୍ୟାବେଳେ ବାଲକୋନିରେ ଠିଆହୋଇ ଭିଡ଼ ଜମିଆସୁଥିବା ପାର୍କକୁ ଲକ୍ଷ୍ୟ କରୁଥିଲା । ହଠାତ୍ ଦେଖିଲା, ସୁରଭି ହଷ୍ଟେଲ୍ ଗେଟ୍ ପାଖରେ ସ୍କୁଟରରୁ ଓହ୍ଲାଉଛି । ତା'ର ଡ୍ରେସ ସଂପୂର୍ଣ୍ଣଭାବରେ ବର୍ଷାରେ ଭିଜି ଯାଇଛି । ସେ ଅମରେଶର ଶରୀରକୁ ଲାଗି ହୋଇ ବସିଥିଲା । ଏଇ କିଛି ଦିନ ହେଲା ସେ ଅମରେଶ ସାଙ୍ଗରେ ମିଶୁଛି । ସୁରଭି କହୁଥିଲା, ଅମରେଶ ତାର କ୍ଲାସମେଟ୍ । ଏଇ କିଛି ଦିନ ହେଲା ଅମରେଶ ଏଇ ସହରରେ ପୋଷ୍ଟିଂ ହୋଇଛି । ଏମ.ଏ. ପାସ୍ କରିସାରିଲା ପରେ ଆଉ ଅମରେଶ ସାଙ୍ଗରେ ତାର ଦେଖା ହୋଇ ନ ଥିଲା । ଅମରେଶ ପଳେଇଥିଲା ଦିଲ୍ଲୀ କଂପିଟେଟିଭ ପରୀକ୍ଷା ଦେବା ପାଇଁ । ଆଇ. ଏ. ଏସ ନ ପାଇ ସେ ଓଡ଼ିଶା

ଫେରିଆସି ଓ.ଏ.ଏସ. ରେ ଜଏନ୍ କରିଛି । ସୁରଭି ତାକୁ ଭେଟିଥିଲା କଫି ହାଉସରେ । ଏବେ ଦୁଇଜଣଙ୍କ ମେଳ ବେଶ୍ ଜମି ଯାଇଛି । ଅମରେଶ ଏଇଠି ବଂଗଳାରେ ରହୁଛି ତା'ର ବାପା ମାଆଙ୍କ ସାଙ୍ଗରେ । ସୁରଭି ଦଉଡ଼ି ଦଉଡ଼ି ସିଡ଼ିରେ ଉପରକୁ ଆସୁ ଆସୁ ସୁନୟନା ହାବୁଡ଼େ ପଡ଼ିଗଲା । 'ମୁଁ ଜାଣେ ପରା ତମେ ନିଶ୍ଚୟ ମୋ ପାଇଁ ଅପେକ୍ଷା କରୁଥିବ, ହଉ ଚାଲ ଚାଲ ତଳେ ଚାହା ପିଇବା ।' ସୁନୟନା କିଛି କହିବା ଆଗରୁ ସୁରଭି ତାକୁ ଭିଡ଼ି ଭିଡ଼ି ହଷ୍ଟେଲ କ୍ୟାଣ୍ଟିନକୁ ନେଇଗଲା । ସେଇଠି ଚାହା ପିଉ ପିଉ ସୁରଭି କହିଲା ଅମରେଶ କଥା । ଉତ୍ତରରେ ସୁନୟନା କହିଲା, 'ତୁ ଏତେଟା ଫ୍ରିଲି ମିଶିବା ଭଲ ନୁହେଁ ସୁର...ହଠାତ୍ କେଉଁ ଦୁର୍ବଳ ମୁହୂର୍ତ୍ତରେ କଣ ଯେ ଘଟିଯିବ କିଏ କହିବ ! ଆଚ୍ଛା ତୁ ଅମରେଶକୁ ପ୍ରପୋଜ କରୁନୁ ? ସିଏ ତୋର କ୍ଲାସମେଟ୍, ଆଉ ଦେଖିବାକୁ ଭଲଲାଗୁଛି ମଧ୍ୟ ।' ସୁରଭି କହିଲା, 'ହଁ ଅପା, ମୁଁ ମଧ୍ୟ ସେ କଥା କହିଲି । ସେ କିନ୍ତୁ କହିଛି ଆଉ କିଛିଦିନ ଅପେକ୍ଷା କରିବାକୁ ।' ଅମରେଶ କୁହେ, 'ଆଉ କିଛିଦିନ ଜୀବନଟାକୁ ଉପଭୋଗ କରିବାରେ କ୍ଷତି କଣ ? ତା ଭିତରେ ଯଦି ତମର ବାହାଘର ଅନ୍ୟ କେଉଁଠି ହୋଇଯାଏ ତେବେ ମଧ୍ୟ କିଛି କ୍ଷତି ନାହିଁ.... ।'

ଗତ ରବିବାର ଦିନ ସୁରଭିର ବାପା ମାଆ ଆସିଥିଲେ । ସୁରଭି ସୁନୟନାକୁ ସେମାନଙ୍କ ସହ ପରିଚୟ କରେଇ ଦେଇଥିଲା । ସେମାନେ ସୁନୟନାକୁ ଲକ୍ଷ୍ୟ କରି କହିଲେ, 'ତୁ ତାକୁ ଟିକିଏ ବୁଝା, ଯେତେହେଲେ ଆମେ ଏ ସମାଜରେ ବାସ କରୁଛେ । ଝିଅକୁ ସ୍ୱାଧୀନତା ଦେଇଛେ ବୋଲି ଯେ ଆମେ ସମାଜର ସଂସ୍କାରକୁ ଭୁଲିଯିବା, ତାହା କେମିତି ହେବ ! ସୁରଭି ନାଁରେ ମତେ କେତେ ଲୋକ କେତେ କଥା କହୁଛନ୍ତି । ଯେତେହେଲେ ସେ ଆମର ଗୋଟିଏ ବୋଲି ଝିଅ - କେତେ ଆଡୁ ପ୍ରପୋଜାଲ ଆସିଲାଣି । ଏଇ ବର୍ଷ ଆମେ ବାହାଘର କରିଦେବୁ । କେତେଦିନ ଆଉ ନିଆଁକୁ ଅଣ୍ଟିରେ ପୂରାଇ ବୁଲିବୁ ? କେତେବେଳେ ଏହା ଆମକୁ ଜାଳିପୋଡ଼ି ଛାରଖାର କରିଦେବ କିଏ କହିବ ! କିନ୍ତୁ ସୁରଭି ଜମାରୁ ରାଜିହେଉନି, ଖାଲି କହୁଛି - ଆଉ କିଛି ଦିନ ଯାଉ । ଏତେ ତରତର କାହିଁକି ?'

ସେମାନେ ଚାଲିଗଲା ପରେ ସୁନୟନା ସୁରଭିକୁ ବୁଝାଇବାକୁ ଚେଷ୍ଟା କରିଛି । କହିଛି, 'ମଉସାମାଉସୀଙ୍କ କଥା ମାନିନେ । ଏବେ ଯେଉଁ ରୂପର ଚେହେରା ତୋର ଚିକ୍ ଚିକ୍ କରୁଛି, ଯାହାକୁ ନେଇ ତୁ ଆଜି ଫୁରଫୁର କରି ଉଡୁଛୁ, ହଠାତ୍ ଯଦି ଅଚାନକ ଯୋର କରି ବର୍ଷା କିମ୍ବା ଘଡ଼ଘଡ଼ି ମାରେ, ଖୁବ୍ ଯୋରରେ ମେଘ ଅଜାଡ଼ି ହୋଇପଡ଼େ ତେବେ ତୁ କଣ ସମ୍ଭାଳି ପାରିବୁ ? ନିଜେ ଭୟଭୀତ ହୋଇଯିବୁ, ରକ୍ଷା

ପାଇବାକୁ ଆଶ୍ରୟ ଖୋଜିବୁ । ସେତେବେଳକୁ ଉପଯୁକ୍ତ ଆଶ୍ରୟ ମିଳିଲେ ତ ? ବେଳ ଥାଉ ଥାଉ କାମ ହୋଇଯିବା କଥା ।' ସୁରଭି କଥାକୁ ଶୁଣେ, ଏ କାନରେ ପୂରାଇ ସେ କାନରେ ବାହାର କରିଦିଏ । ଅମାନିଆ ଝିଅଟା !

ସମୟ ଗଡ଼ି ଚାଲିଛି । ସୁନୟନା ଏବଂ ସୁରଭି ଯିଏ ଯାହା ବାଟରେ ନିଜ ନିଜର ଜୀବନ ବିତାଇ ଚାଲିଛନ୍ତି । ଆଉ କିଛିଦିନ ପରେ ଦଶହରା ଆସିଯିବ । ଓଡ଼ିଆମାନଙ୍କର ବାରମାସରେ ତେର ପର୍ବ । ସବୁଠାରୁ ବଡ଼ ପର୍ବ ହେଲା ଦଶହରା । ତା'ପରେ କୁଆର ପୁନେଇ, କାଳିପୂଜା, ବାଲିଯାତ୍ରା...ଇତ୍ୟାଦି ଇତ୍ୟାଦି ।

ମା' ଦୁର୍ଗା ଆସିବେ... ଧରାବତରଣ କରିବେ । ପୃଥିବୀରୁ ପାପ ନାଶ କରିବା ପାଇଁ ମା' ଦୁର୍ଗା ଆସନ୍ତି ମହିଷାସୁର ବଧ କରିବା ପାଇଁ । ପୃଥିବୀକୁ ଧ୍ୱଂସମୁଖରୁ ରକ୍ଷା କରିବା ପାଇଁ । ଦେବତାମାନେ ସାକାର ରୂପରେ ମର୍ତ୍ତ୍ୟକୁ ଓହ୍ଲାଇ ଆସନ୍ତି । ସନ୍ଦିପ ଚିଠି ଲେଖିଛି ପୂଜାକୁ ଆସିବ ବୋଲି । ସୁନୟନା ମଧ୍ୟ ଛୁଟିନେବା ପାଇଁ ଏବେଠୁ ପ୍ରସ୍ତୁତି ଆରମ୍ଭ କଲାଣି । ଘରେ ଶାଶୁଶ୍ୱଶୁର ମଧ୍ୟ ଚାତକ ପରି ଚାହିଁ ରହିଥିବେ । ଗାଁରେ ଏଥର ଦେବୀ ପୂଜା ହେଉଛି । ବନ୍ଧୁବାନ୍ଧବ ଆସିବେ, ଘରେ ଭିଡ଼ ଜମିବ । ସୁନୟନା ମନେ ମନେ ଖୁସି ହୋଇଗଲା । ସବୁଠୁ ବଡ଼କଥା ହେଲା ଗାଁରେ ସବୁ ଯୁବକ ଯୁବତୀ ମିଶି ଏଥର ଗୋଟାଏ ଗୀତିନାଟ୍ୟ ମଞ୍ଚସ୍ଥ କରିବାର ଆୟୋଜନ କରୁଛନ୍ତି । ଖବର ଦେଇଛି ସନ୍ଦିପ । ସୁନୟନା ଭାବୁଛି, ସୁରଭିକୁ ସାଂଗରେ ନେଲେ କେମିତି ହୁଅନ୍ତା ? ମାତ୍ର ସୁରଭି ହସି ଉଡ଼େଇ ଦେଇଛି ଏ ପ୍ରସଙ୍ଗକୁ । କହିଛି, 'ମୋ ସାଙ୍ଗରେ ତମେ ମଜା କରିବ କେତେବେଳେ ? ସନ୍ଦିପ ଭାଇନାଙ୍କ କବଳରୁ ମୁକ୍ତି ପାଇଲେ ସିନା !'

ଆଶ୍ୱିନ ମାସ ଆସିଛି । ସବୁଆଡ଼େ ପୂଜାର ମାହୋଲ । ହଷ୍ଟେଲ ଆସ୍ତେ ଆସ୍ତେ ଖାଲି ହେଉଛି - କିଏ କିଏ ଛୁଟି ଆରମ୍ଭ ପୂର୍ବରୁ ଘରକୁ ଯିବାକୁ ଆରମ୍ଭ କଲେଣି । ମାତ୍ର ପାଞ୍ଚ ଛଅ ଜଣ, ଯେଉଁମାନଙ୍କ ଘର ବହୁଦୂରରେ ସେମାନଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ଘରକୁ ଯିବାକୁ ଆରମ୍ଭ କଲେଣି । ସୁନୟନା ଶାଶୁଶ୍ୱଶୁରଙ୍କ ପାଇଁ ଶାଢ଼ୀ, ଧୋତି ଆଉ ସନ୍ଦିପଙ୍କ ପସନ୍ଦ ମୁତାବକ କ୍ରୀମ କଲରର ଡ୍ରେସ କିଣି ରଖିଛି । ଦେଖାଯାଉ ସନ୍ଦିପ ତା' ପାଇଁ କଣ ଆଣୁଛନ୍ତି !

ସେଦିନ ସୁନୟନାକୁ ବସଷ୍ଟାଣ୍ଡରେ ଛାଡ଼ି ଫେରିଲାବେଳକୁ ସୁରଭି ଦେଖିଲା ହଷ୍ଟେଲ ସାମନାରେ ପୋଲିସ ଗାଡ଼ି । ଆରେ ଏ ଅସମୟରେ ପୋଲିସ ଗାଡ଼ି ! ପୁଣି କଣ ଗଣ୍ଡଗୋଳ ଘଟିଛି କି ? ବେଳେବେଳେ ପୋଲିସ୍ ଗାଡ଼ି ଆସେ, ପୋଲିସ୍ କଣ ସବୁ ବୁଝାବୁଝି କରି ଫେରିଯାଏ ।

ଆଜି କ'ଣ କିଛି ଅଘଟଣ ଘଟିଛି କି ! ସୁରଭି ଅଫିସ ଭିତରକୁ ପଶିଗଲା । ପୋଲିସ କହୁଛି, 'ମୁଁ ଜାଣେ ମାଡ଼ାମ୍ ଆପଣ କିଛି କରିପାରିବେ ନାହିଁ, କିନ୍ତୁ ଆପଣ ତ ପିଲାମାନଙ୍କୁ ତାଗିଦ କରିପାରିବେ ! ସୁମିତ୍ରା ପୂଜାଛୁଟି ପୂର୍ବରୁ ଘରକୁ ଯାଇଥିଲା, ବର୍ତ୍ତମାନ ପୂଜାଛୁଟି, କିନ୍ତୁ ସେ ଘରେ ପହଞ୍ଚି ନାହିଁ । ତାର ବାପା ଆମକୁ ଫୋନ୍ କରି ଅଥୟ କରି ପକାଇଲେଣି । ଆପଣ କିଛି ଯଦି ସନ୍ଦେହ କରୁଥାନ୍ତି ତେବେ ଆପଣ କହିଲେ ଆମେ ସେଇ ଅନୁସାରେ ଆଗେଇବୁ । ପୋଲିସ୍ ଏ ପର୍ଯ୍ୟନ୍ତ ଆପଣଙ୍କୁ ସବୁକଥାରେ ସହଯୋଗ କରିଆସିଛି, ଆଉ ଆପଣ ଯଦି ସହଯୋଗ ନ କରନ୍ତି ତେବେ ଦୋଷୀ ଦଣ୍ଡ ପାଇବ କିପରି ?'

ସୁରଭି ଜାଣିଥିଲା ସୁମିତ୍ରାକୁ । ସେ ତଳ ବଖରାରେ ରହୁଥିଲା । ତା' ପାଖକୁ ସନ୍ଧ୍ୟାବେଳେ ଅନେକ ପୁଅ ପିଲା ଆସନ୍ତି । ସେମାନଙ୍କ ମଧ୍ୟରୁ କିଏ ଜଣେ ପୂଜାଛୁଟିରେ ତାକୁ ବାହାରକୁ ନେଇ ଯାଇଥିବ, ପୁଣି ବେଳ ଦେଖି ଆଣି ଘରେ ଛାଡ଼ିଦେବ । ସୁରଭି କିଛି ନ କହି ଉପରକୁ ଚାଲିଗଲା ।

ଆଜି ହଷ୍ଟେଲ ପ୍ରାୟ ଖାଲି । ଅମରେଶ ଆସିବ ବୋଲି କହିଛି । ଆଜି ତାର ସିନେମା ଦେଖା, ବାହାରେ ଖାଇବା ପ୍ରୋଗ୍ରାମ ରହିଛି । ସୁରଭି ଦିନସାରା ଖାଲି ଡ୍ରେସ ବାଛିବାରେ ସମୟ କଟାଇଛି । ଅମରେଶ ପସନ୍ଦ ମୁତାବକ ଜିନ୍‌ପ୍ୟାଣ୍ଟ ଏବଂ ଗଂଞ୍ଜି ପିନ୍ଧିଲା । ଦର୍ପଣ ଆଗରେ ଠିଆହୋଇ ମୁହଁକୁ ସଜାଇଲା... ଓଠରେ ମାଚିଂ ଲିପ୍‌ଷ୍ଟିକ, ଗାଲରେ ରୁଜ, ଆଇବ୍ରୋ ଇତ୍ୟାଦି ଲଗାଇ ନେଲା ଏବଂ ଘର ଭିତରେ ବ୍ୟସ୍ତ ହୋଇ ପଦଚାରଣ କଲା । ଆଜି ଅମରେଶ ଆସିଲେ ତାକୁ କହିଦେବ, 'ଆଉ ଏତେ ଖୋଲାରେ ବୁଲିବା ଠିକ୍ ହେଉନି, ଜଲଦି ଏହାର ଫଇସଲା ହେବା ଦରକାର ।'

ରାତିରେ ହୋଟେଲରୁ ଫେରି ଡ୍ରେସ ବଦଳାଇ ବିଛଣାରେ ଲୋଟିପଡ଼ିଲା ସୁରଭି । ଅମରେଶ କହିଛି ଖୁବ୍ ଶୀଘ୍ର କିଛି ଗୋଟାଏ ବନ୍ଦୋବସ୍ତ କରିବ । ପାଖ ବିଛଣାଟା ଖାଲି ପଡ଼ିଛି । ଓଃ ! ଏ ସୁନୟନା ଅପାଟା ମତେ ଦେଖିଲା ମାତ୍ରେ ଗାଳି କରୁଛି । ସତରେ ଅପାଟା କେଡ଼େ ଭଲ ! ଏଥର ଆସୁ ତା'ର ମୋର କଥାବାର୍ତ୍ତା । ସୁରଭି ମନକୁ ମନ ହସିଦେଲା । ସବୁ ପୁରୁଷ ଜାତି ଏଇୟା, ପାଖରେ ପାଇଲେ ଗୋଟା ସୁଦ୍ଧା ନିଜର ବୋଲି ମନେ ହୁଅନ୍ତି । ରାତିରେ ସୁରଭି ଅମରେଶକୁ ସ୍ୱପ୍ନରେ ଭେଟିଲା । ଅମରେଶ ବରବେଶ ହୋଇଛି । 'ଓଃ ଅମରେଶ ଇଉ ଆର ସୋ ୱାଣ୍ଡର ଫୁଲ... ।' ସୁରଭିର ନିଦ ଭାଙ୍ଗିଲା... ଆରେ ଯେ କଣ ସକାଳ ହୋଇଗଲାଣି ନା କଣ...!

ପୂଜାଛୁଟି ସରି ଆସୁଛି । ଚଢ଼େଇମାନେ ସବୁ ବସାକୁ ଫେରିବେ ଗୋଟି ଗୋଟି

ହୋଇ । କିଏ କେତେ ପ୍ରକାରର ସ୍ମୃତିନେଇ ଆସିଥିବେ । ସୁନୟନା ଅପା ତାର ସନ୍ଦିପ ଭାଇଙ୍କ କଥା କହିବ ଏବଂ ସିଏ ଅମରେଶ କଥା କହିବ । ସେଇ ଚର୍ଚ୍ଚା ଗୁଡ଼ିକ ବେଶ୍ କିଛିଦିନ ହଷ୍ଟେଲ ଜୀବନକୁ ସରଗରମ କରି ରଖିବ ।

ସେଦିନ ବସ୍‌ଷ୍ଟାଣ୍ଡରେ ସେ ପହଞ୍ଚିଲା ବେଳକୁ ମୁହଁସଞ୍ଜ । ଚାରିଘଣ୍ଟାର ବସ୍ ଯାତ୍ରା । ବସ୍ ଭିତରେ ଥାଇ ବାଟସାରା ସୁନୟନା ଭାବୁଥାଏ ସନ୍ଦିପ କଥା । ପନ୍ଦର ଦିନର ରହଣି ପନ୍ଦର ମିନିଟ୍ ପରି କଟିଗଲା । ଦିନସାରା କାମରେ ବ୍ୟସ୍ତ ରହି ରାତି ସାରା ସନ୍ଦିପ ପାଖରେ ଅନିଦ୍ରା ରୁହେ ସିଏ । ଓଃ, କି ଗପ ସେ ଗପନ୍ତି କେଜାଣି ତା'ର ଅନ୍ତ ନଥାଏ ! କଲିକତାର ବେଶ୍ୟାପଡ଼ାଠୁ ଆରମ୍ଭ କରି ଚାକିରୀ ଜୀବନର ସବୁ କଥା ଗପିବାରେ ସେ ଧୁରନ୍ଧର । ସୁନୟନାର ଆଖି ବୁଜି ଆସିଲାବେଳକୁ ସକାଳ ହୋଇଯାଏ ।

ଆରେ ଇଏ କଣ ! ସୁରଭିକୁ ଏତେ କରି ଖବର ଦେଇଥିଲା ସିଏ । ବସରୁ ଓହ୍ଲାଇ ବସଷ୍ଟାଣ୍ଡର ଅପେକ୍ଷା କରିଥିବା ଲୋକଙ୍କ ଉପରେ ନିଜର ବ୍ୟସ୍ତବହୁଳ ଆଖି ଦୁଇଟାକୁ ପହଂରାଇ ଆଣିଲା ସିଏ । କଣ ଆଜି ପୁଣି ଅମରେଶ ସାଙ୍ଗରେ କୁଆଡ଼େ ପଳାଇଥିଲା....! ସୁନୟନା ଦେଖିଲା ଅପେକ୍ଷା କଲେ ରାତି ହୋଇଯିବ । ତରତରରେ ରିକ୍ସା ଖଣ୍ଡେ ଧରିଲା । ରାସ୍ତାରେ ଭିଡ଼ ଏତେ ନ ଥିଲା । ଆସନ୍ତାକାଲି ସ୍କୁଲ, କଲେଜ, ଅଫିସ ସବୁ ଖୋଲିବ । କାଲିଠୁ ଭିଡ଼ ଆରମ୍ଭ ହୋଇଯିବ । ଆଜି ସାଧାରଣ ଭାବରେ ଭିଡ଼ । ରିକ୍ସାରୁ ଓହ୍ଲାଇ କ୍ଷିପ୍ର ପଦକ୍ଷେପରେ ଶିଡ଼ି ଦେଇ ଉପରକୁ ଉଠିଗଲା ସିଏ । ଅନ୍ୟ ରୁମ୍‌ଗୁଡ଼ିକ ପ୍ରାୟତଃ ବନ୍ଦ ଥିଲା । ପିଲାମାନେ ସବୁ ଆସୁଥିବେ । ଆରେ ଯେ କଣ ଦେଖୁଛି ସିଏ ! ରୁମ୍ କ'ଣ ଭିତରପଟୁ ବନ୍ଦ ! କ'ଣ ସୁରଭି ଏ ସମୟରେ ଘର ଭିତରେ ! କ'ଣ ଦେହ ଖରାପ ହେଲାକି ! ସେ ତ ଏ ସମୟରେ ବାହାରେ ରହିବା କଥା । ତେବେ ଶୋଇବ କହିଁକି ? ସୁନୟନା ଚିତ୍କାର କଲା, 'ସୁର ସୁର କବାଟ ଖୋଲ ।' ଧଡ଼୍ ଧଡ଼୍ କରି କବାଟ ବାଡ଼େଇଲା ସିଏ । ତା ମନ ପାପ ଛୁଇଁଲା । ସେ ବଡ଼ ପାଟିରେ ଚିତ୍କାର କଲା । ଚଉକିଦାର, ପିଅନ ଆଦି ଦଉଡ଼ି ଆସିଲେ । ଦରଓ୍ବାନ କହିଲା, 'ମାଡ଼ାମ, ସୁରଭି ନାନୀ ତ ଦିନସାରା ଆଜି ଘରୁ ବାହାରି ନାହାନ୍ତି । ସକାଳୁ ତ ଖାଲି ତଳକୁ ଆସିଥିଲେ ଜଳଖିଆ ଖାଇବା ପାଇଁ । ତେବେ ପୁଣି କଣ ହେଲା ?'

ସମସ୍ତେ ମିଳିମିଶି ଗୋଟେ ଧକ୍କାରେ କବାଟକୁ ଭାଙ୍ଗିଦେଲେ । ଆଲୁଅ ଜଳାଇବାରୁ ଦେଖାଗଲା ଡ୍ରେସ ପିନ୍ଧି ସୁରଭି ପଙ୍ଖାରୁ ଝୁଲୁଛି । ଗୋଡ଼ ଦୁଇଟି ଚଟାଣରୁ ଦୁଇଫୁଟ ଉଚ୍ଚରେ । ଶାଢ଼ି ଗୁଡ଼ାହୋଇ ପଙ୍ଖାରୁ ସେ ଝୁଲୁଛି । ପାଟିବାଟେ ଫେଣ

ବାହାରି ପଡ଼ିଛି । ଖଟ ଉପରେ ଠିଆହୋଇ ପଙ୍ଖାରୁ ଝୁଲିପଡ଼ି ଖଟରୁ ଅଲଗା ହୋଇ ଝୁଲୁଛି । ସୁନୟନା ଚିତ୍କାର କରି ତଳେ ପଡ଼ିଗଲା । ଘର ଚଟାଣରେ ଚିଠିଟିଏ ପଡ଼ିଥିଲା । ସେଥିରେ ଲେଖାଥିଲା, 'ଅପା, ପାଦ ମୋର ଖସି ଯାଇଛି' - ସୁରଭି ।

❖

# ବାଘ

ଫଗୁଣ ମାସ ସରିବ ସରିବ ହେଉଛି । ଚୈତ୍ର ମାସ ଆସୁଛି । ଶୀତର ଅନୁଭବ ସରି ସରି ଆସୁଛି । କଅଁଳିଆ ଖରାର ପ୍ରଭାବ ଧୀରେ ଅନୁଭୂତ ହେଲାଣି । ଆମ୍ବ ଗଛରେ ବଉଳ ଧରିଛି । ଫୁଲରେ ଭାଙ୍ଗି ପଡୁଛି ଆମ୍ବଗଛଟା । ଆଉ କିଛି ଦିନ ପରେ କୁନି କୁନି ଫଳ ଧରିବ । ତା'ପରେ ଆମ୍ବ ବାସ୍ନା । ଏ ସନ ବିଶେଷ ଶୀତ ହେଲା ନାହିଁ । ଶୀତ ଲୁଗା ବ୍ୟବହାର ହେଲା ନାହିଁ । ଗରମ ପାଣି ବ୍ୟବହାର କରିବାକୁ ପଡ଼ିଲା ନାହିଁ । ଶୀତର ପ୍ରକୋପରେ ବସ୍ତିର ଲୋକମାନେ ସନ୍ଧ୍ୟାବେଳେ ନିଆଁ ପାଖରେ ମେଳି ମେଳି କରି ବସି ନିଆଁ ପୁଇଁବାର ଦରକାର ହୋଇନି ।

ସହରକୁ ଲାଗି ବସ୍ତିଟାଏ ଗଢ଼ି ଉଠିଛି ଅନେକ ଦିନରୁ । ଏମିତିଆ ବସ୍ତି ସବୁ ସହର ଭିତରେ ଅନେକ ଜାଗାରେ ହେଲାଣି । ବିଭିନ୍ନ ପ୍ରକାରର ଲୋକ ସେମାନଙ୍କର କାମ ଧନ୍ଦାରେ ଆସି ଏହି ବସ୍ତିମାନଙ୍କରେ ଅସ୍ଥାୟୀ ଘର କରି ରହିଯାଆନ୍ତି । ସହରର ଲୋକଙ୍କର କାମରେ ଆସନ୍ତି ସେମାନେ । ଧୋବାଠାରୁ ଆରମ୍ଭ କରି ବାରିକ, ମିସ୍ତ୍ରୀ ମଜଦୁରମାନଙ୍କର ଆଶ୍ରୟସ୍ଥଳ ପାଲଟିଯାଏ ବସ୍ତିଟି । ବେଳେବେଳେ ଭଙ୍ଗାରୁଜା ଚାଲେ । ତା'ପରେ ଯଥା ପୂର୍ବଂ ତଥା ପରଂ ।

ଦୁଇ ବର୍ଷ ହେଲା ସତ୍ୟାନନ୍ଦ ଏହି ଝୁମ୍ପୁଡ଼ି ବସ୍ତିକୁ ଆସିଛି । ସେ ଆଗରୁ ଅନ୍ୟ ଜାଗାରେ ରହୁଥିଲା । ଆଗରୁ ମୂଲିଆ କାମ କରୁଥିଲା, ଏବେ ମିସ୍ତ୍ରୀ କାମ କରୁଛି । ଗୋଟିଏ ମାତ୍ର ଘର, ତା' ପାଖକୁ ଲାଗିଛି ଚାଳିଆଟା । ସେଠି ରୋଷେଇ ପତ୍ର ହୁଏ । ପାଖରେ ସାଧାରଣଙ୍କ ପାଇଁ ଅଛି ନଳକୂପଟାଏ । ସକାଳୁ ସକାଳୁ ଲୋକମାନଙ୍କର ଲମ୍ବା ଧାଡ଼ି ଲାଗିଥାଏ । ବସ୍ତିରେ ସେଇ ଗୋଟିଏ ମାତ୍ର ନଳକୂପ । ସିଏ ଖରାପ ହୋଇଗଲେ ଲୋକେ ଦଉଡ଼ନ୍ତି ପାଖ ନାଳିଆକୁ । ସେଇଟା ପୁଣି ବର୍ଷକର ଅନେକ ଦିନ ଶୁଖା ପଡ଼ିଥାଏ । କିନ୍ତୁ ଝୁମ୍ପୁଡ଼ିମାନଙ୍କର କଥା ବୁଝେ କିଏ ? ଅନେକ ଦିନ ହେଲା ସତ୍ୟାନନ୍ଦ ଭାବୁଛି ଘରଟାକୁ ମରାମତି କରିବ । କିନ୍ତୁ ମଞ୍ଜରୀର ଏକମାତ୍ର ଜିଦ୍, ସେ ଏଠି ରହିବ ନାହିଁ, ନିଜ ଘରକୁ ଯିବ ।

ମଞ୍ଜରୀ କାହିଁକି ଏମିତିଆ ସ୍ୱପ୍ନ ସବୁ ଦେଖେ କେଜାଣି ? ସକାଳର ସୂର୍ଯ୍ୟକିରଣ ବସ୍ତି ଭିତରକୁ ପଶୁଛି । ସତ୍ୟାନନ୍ଦ କିନ୍ତୁ ବିଛଣା ଛାଡ଼ି ନାହିଁ । ଭିଡ଼ି ମୋଡ଼ି ହେଉଛି । କାଲି ରାତିରେ ମଞ୍ଜରୀ ତାକୁ କଳବଳ କଲା । ତାକୁ କୋଳେଇ ନେଇ ସତ୍ୟାନନ୍ଦ କହିଲା, 'ତୁ ଖାଲି ନିଜ ଘରକୁ ଯିବା କଥା କହୁଛୁ, ଟିକିଏ ଅପେକ୍ଷା କର ସମୟ ଆସୁ,

ମୁଁ ନିଜ ଘରକୁ ଯିବି, ତୋତେ ରାଣୀ କରି ରଖିବି ।' ମଞ୍ଜରୀଟା ମହା ଜିଦିଆ । ଯାହା ବୁଝିଥିବ ସେଇଆ ।

ସତ୍ୟାନନ୍ଦ କଡ଼ ଲେଉଟାଇ ପାଖ ତକିଆକୁ ଚାହିଁଲା । ମଞ୍ଜରୀ ନାହିଁ, ନିଶ୍ଚୟ ନଳକୂପ ପାଖକୁ ଯାଇଥିବ । ମଞ୍ଜରୀ କୁହେ, 'ଜଲଦି ନଗଲେ ସେଠି ଲୋକମାନେ ଭିଡ଼ ଲଗେଇ ଦେବେ ।' କ'ଣ ସେମାନଙ୍କୁ ଲାଗେ କେଜାଣି । ମଞ୍ଜରୀକୁ ଦେଖିଲେ ସେମାନେ ଡିମା ଆଖିରେ ତାକୁ ଅନାନ୍ତି । କେହି କୁହନ୍ତି,'ଶଳା ସତିଆଟାର ଭାଗ୍ୟ ଭଲ, ନହେଲେ ଏମିତିଆ ମାଲ୍‌ଟାକୁ ପାଆନ୍ତା କେମିତି ?' ସତ୍ୟାନନ୍ଦ କୁହେ,'ତୁ ସେମାନଙ୍କୁ କିଛି କହିବୁ ନାହିଁ । ଶଳାଙ୍କୁ ଦେଖିଲେ ମୁଁ ତାଙ୍କର ଜିଭ ଓଟାରି ଆଣିବି ।'' ମଞ୍ଜରୀର ଗୀତ ଶୁଭୁଛି । କେହି ନଥିଲେ ପାଣି କଳ ପାଖରେ ସେ ଅନାବନା ଗୀତର ସ୍ୱର ଲମ୍ବାଇ ଦିଏ । ଲୋକ ଆସୁଥିବାର ଦେଖିଲେ ଓଦା ଲୁଗାକୁ ଦେହରେ ଗୁଡ଼ାଇ ଦେଇ ତରତରରେ ପଳାଇ ଆସେ । ସେଇ ଅବସ୍ଥାରେ ସତ୍ୟାନନ୍ଦ ତାକୁ ଧରି ପକାଏ । କହେ,'ସତରେ ତୋର ଚେହେରା ଯାହା ହୋଇଛି ନା ସ୍ୱର୍ଗରୁ ଇନ୍ଦ୍ର ଦେବତା ମଧ୍ୟ ଓହ୍ଲାଇ ଆସିବେ ଧରାପୃଷ୍ଠକୁ, ମଣିଷ ତ ଛାର ।' ମଞ୍ଜରୀ ଲାଜେଇ ଯାଇ ଲୋଟିଯାଏ ସତ୍ୟାନନ୍ଦର ଚଉଡ଼ା ଲୋମଶ ଛାତିରେ ।

ସତ୍ୟାନନ୍ଦ ଭାବୁଥିଲା । ଆଗରୁ ସେ ଦୁଇଜଣଯାକ କାମ କରୁଥିଲେ ଜଣେ ଠିକାଦାର ପାଖରେ । ସେଇ ଠିକାଦାରର ନଜର ପଡ଼ିଗଲା ମଞ୍ଜରୀ ଉପରେ । ମଞ୍ଜରୀ ସେତେବେଳକୁ କୋଡ଼ିଏ ବର୍ଷର ଯୁବତୀ । ପିତୃମାତୃହୀନା । ମାଆ କୁଆଡ଼େ ତା'ର ଖୁବ୍ ସୁନ୍ଦରୀ ଥିଲା ବୋଲି ମଞ୍ଜରୀ କୁହେ । ସତ୍ୟାନନ୍ଦର ମଧ୍ୟ ନିଜର ବୋଲି କେହି ନଥିଲେ । ଯେଉଁଦିନ ଠିକାଦାର ମଞ୍ଜରୀକୁ ସନ୍ଧ୍ୟାବେଳେ ଅପେକ୍ଷା କରିବାକୁ କହିଲା, ସେଇଦିନ ହିଁ ମଞ୍ଜରୀ ସତ୍ୟାନନ୍ଦର ହାତ ଧରି ତା' ଘରକୁ ଚାଲି ଆସିଲା ଏବଂ ତା' ପରଦିନଠାରୁ ଆଉ କେବେ ସେ କାମକୁ ଯାଇନାହିଁ । ସତ୍ୟାନନ୍ଦ ମଧ୍ୟ ତାକୁ ବାଧ୍ୟ କରିନାହିଁ । ତାଙ୍କର ପ୍ରେମରେ ସାକ୍ଷୀ ରହିଲେ ଈଶ୍ୱର, ଯାହାକୁ ସିଏ କେବେ ଦେଖି ନାହିଁ ।

ସକାଳର ଖରା ଟାଣ ହେଉଛି । କିଛି ସମୟ ପରେ ଝୁମ୍ପୁଡ଼ି ବସ୍ତିରେ ପାଟିଗୋଳ ଶୁଭିବ - ଗାଡ଼ି ମୋଟରର ପେଁ ପାଁ ଶୁଭିବ । ସେମାନେ ଆସିବେ । ଦରକାର ମୁତାବକ ମୂଲିଆ, ମିସ୍ତ୍ରୀ, ବଢ଼େଇମାନଙ୍କୁ ଖୋଜି ନେବେ । ସକାଳୁ ଦଶଟା ପର୍ଯ୍ୟନ୍ତ ଏମିତିଆ ଭିଡ଼ ଲାଗି ରହେ । ପୁଣି ଦଶଟା ପରେ ବସ୍ତି ଶାନ୍ତ ହୋଇଯାଏ । ପୁଣି ସଞ୍ଜବେଳକୁ ସମସ୍ତେ ଫେରନ୍ତି ଯିଏ ଯାହା କାମରୁ । ସନ୍ଧ୍ୟା ପରେ ଆଉ କେହି କୁଆଡ଼େ ଯାଆନ୍ତି

ନାହିଁ । ଏଇଟା ହେଲା ଝୁମ୍ପୁଡ଼ିରେ ରହୁଥିବା ଲୋକମାନଙ୍କର ଜୀବନ ପ୍ରଣାଳୀ ।

ସତ୍ୟାନନ୍ଦ ବିଛଣା ଛାଡ଼ିଲା । ବାହାରକୁ ଗଲା । ବସ୍ତିକୁ ଲାଗି ଗଢ଼ି ଉଠିଛି ବ୍ୟବସାୟୀ ସିଂହାଣିଆ ବାବୁଙ୍କର ତ୍ରିତଳ ପ୍ରାସାଦ । ସିଂହାଣିଆ ବାବୁଙ୍କୁ ସମସ୍ତେ ଜାଣନ୍ତି । କାରଣ ଘର ତିଆରି ହେଲା ବେଳେ ଏଇ ବସ୍ତିରୁ ହିଁ ମିସ୍ତ୍ରୀ ମଜୁରିଆମାନେ ଯାଇ ତାଙ୍କ ଘର କାମ କରୁଥିଲେ । ସିଂହାଣିଆ ବାବୁଙ୍କର ଆମଦାନୀ ରପ୍ତାନୀ ବ୍ୟବସାୟ । ବର୍ଷକର ଅଧିକାଂଶ ସମୟ ସେ ବାହାରେ କଟାନ୍ତି । ଚାକର ଚାକରାଣୀ ନେଇ ସମୟ କଟାନ୍ତି ତାଙ୍କର ପତ୍ନୀ ସୁଧାମଣି । ଏତେ ଧନ ସମ୍ପତ୍ତି ମଧ୍ୟରେ ସିଂହାଣିଆ ଦମ୍ପତ୍ତିଙ୍କର ଏକ ମାତ୍ର ଦୁଃଖ ହେଲା ସେମାନଙ୍କର କୌଣସି ସନ୍ତାନ ନଥିଲେ । ବହୁବର୍ଷ ଧରି ନାନା ପ୍ରକାର ଚେଷ୍ଟା କରିଛନ୍ତି ସେମାନେ । ଡାକ୍ତରମାନଙ୍କର କେବଳ ଗୋଟାଏ ସାନ୍ତ୍ୱନା ବାଣୀ - 'ବ୍ୟସ୍ତ ହୁଅନ୍ତୁ ନାହିଁ, ଭଗବାନଙ୍କୁ ଡାକନ୍ତୁ ସବୁ ଠିକ୍ ହୋଇଯିବ ।' କେତେ ପୂଜାବ୍ରତ ସୁଧାମଣି କରିନାହାନ୍ତି ? କେତେ ଉପବାସ କରିନାହାନ୍ତି ? ସବୁ ବିଫଳ ହୋଇଛି । ସୁଧାମଣି ସବୁବେଳେ କୁହନ୍ତି, ' ଆମ କୋଳ ତ ଭଗବାନ ପୂର୍ଣ୍ଣ କଲେ ନାହିଁ, ଏତେ ଧନ ସଂପତ୍ତି କରି ଲାଭ କ'ଣ ? ମୁଁ ମଧ୍ୟ ଏକୁଟିଆ ଘରେ କ'ଣ କରିବି ? ଏଥର ମୁଁ ତମ ସାଙ୍ଗରେ ବାହାରକୁ ଯିବି, ନହେଲେ ତମେ ଘରେ ରହିବ ।' ସିଂହାଣିଆ କୁହନ୍ତି,'କ'ଣ କରିବା, ଏସବୁ ତ ବିଧିର ବିଧାନ । ଆମେ ତ ଚେଷ୍ଟାରେ ହେଳା କରୁନେ । ତମେ ମଧ୍ୟ ଦିଅଁ ଦେବତାଙ୍କ ପୂଜାରେ ହେଳା କରୁନ ।' ସୁଧାମଣି କହନ୍ତି, ' ଆମ ପାଇଁ ଠାକୁର ନାହାନ୍ତି ।' ଆଖି ତାଙ୍କର ଲୁହରେ ଛଳଛଳ ହୋଇ ଉଠେ । ସିଂହାଣିଆ ବାବୁ ସବୁ ଦେଖନ୍ତି, ଅନୁଭବ କରନ୍ତି କିନ୍ତୁ କିଛି କହିପାରନ୍ତି ନାହିଁ । କାହାକୁ ବା କହିବେ । ଦିନେ ଦିନେ ସୁଧାମଣି କହି ଉଠନ୍ତି - 'ଯଦି ଠାକୁର ଆମ କଥା ଶୁଣିବେ ନାହିଁ ତେବେ ମୋର ଅନୁରୋଧ, ତମେ ଆଉ ଗୋଟିଏ ବାହା ହୁଅ, ସନ୍ତାନ ଜନ୍ମ ହେବ, ମୁଁ ତାକୁ ପାଳି ପୋଷି ବଡ଼ କରିବି ।' ଚିତ୍କାର କରି ଉଠନ୍ତି ସିଂହାଣିଆ ବାବୁ, 'ତମର କ'ଣ ମୁଣ୍ଡ ଖରାପ ହେଲାଣି, ମୋର କ'ଣ ବୟସ ଅଛି ବାହାହେବାକୁ ? ତା' ପରେ ଆଉ ଗୋଟାଏ ବାହାହେବା ମାନେ ଘରେ ଅଶାନ୍ତିକୁ ନିମନ୍ତ୍ରଣ କରିବା । ଏ ଘରକୁ କ'ଣ ଆଉ ଗୋଟାଏ ସ୍ତ୍ରୀ ଲୋକ ଆସି ପୁଣି ତମେ ଶୋଉଥିବା ବିଛଣାରେ ଶୋଇବ ? ତମେ ପୁଣି ଏକଥା କହୁଛ ସୁଧାମଣି ଏତେ ବର୍ଷର ବୈବାହିକ ସଂପର୍କ ପରେ ?' ଚୁପ୍ ହୋଇଯାଆନ୍ତି ସୁଧାମଣି । ସ୍ୱାମୀଙ୍କ ସହ ବଡ଼ ପାଟିରେ ତର୍କ କରିବାକୁ ପସନ୍ଦ କରନ୍ତି ନାହିଁ ସେ । ସେ ସିଂହାଣିଆ ବାବୁଙ୍କୁ ଚିହ୍ନିଛନ୍ତି ଭଲ ଭାବେ । ତାଙ୍କ ପାଖେ ବର୍ଷ ବର୍ଷ ଧରି ଛାଇ ପରି ରହିଛନ୍ତି ସେ । ସତରେ ଏଭଳିଆ

କଥା କହିବା ଉଚିତ ହୋଇନାହିଁ ତାଙ୍କ ପକ୍ଷେ ।

ଏଇ ସିଂହାଣିଆ ବାବୁଙ୍କ ସାଙ୍ଗରେ ସତ୍ୟାନନ୍ଦର ସଂପର୍କ ଅନେକ ଦିନର । ସିଂହାଣିଆ ବାବୁଙ୍କର ଘର ତିଆରି ବେଳେ ସତ୍ୟାନନ୍ଦ ମୂଲିଆ କାମ କରୁଥିଲା, ଏବେ ମିସ୍ତ୍ରୀ କାମ କରୁଛି । ବେଳେବେଳେ ସତ୍ୟାନନ୍ଦ, ସିଂହାଣିଆ ବାବୁଙ୍କର ବୋଲହାକ ମଧ୍ୟ କରିଦିଏ । ସିଂହାଣିଆ ବାବୁଙ୍କର ଘର ପଛ ପଟେ ଥିବା ଗୋଦାମ ଘରେ ସତ୍ୟାନନ୍ଦ ଏବଂ ତା' ସାଥିମାନେ କିଛି ଦିନ ଧରି ରହୁଥିଲେ । ସିଂହାଣିଆ ବାବୁ ତାଙ୍କୁ ମାଗଣାରେ ଘର ଦେଇଥିଲେ, କାରଣ ସେ ଭାବିଥିଲେ ଘରେ ରହିଲେ କାମକୁ ଯିବା ଆସିବାରେ ଡେରି ହେବ ନାହିଁ । ସେହିଦିନଠାରୁ ସତ୍ୟାନନ୍ଦର ତାଙ୍କ ସାଙ୍ଗରେ ସମ୍ପର୍କ । ସତ୍ୟାନନ୍ଦ ତାଙ୍କ ଘରକୁ ମଝିରେ ମଝିରେ ଯିବା ଆସିବା କରେ । ସିଂହାଣିଆ ବାବୁ ତାକୁ ତା'ର ଭଲ ମନ୍ଦ କଥା ପଚାରନ୍ତି ।

ଦିନେ ସକାଳୁ ସତ୍ୟାନନ୍ଦକୁ ଡାକରା ପଡ଼ିଲା । ସିହାଣିଆ ବାବୁ ଡାକୁଛନ୍ତି । ସତ୍ୟାନନ୍ଦ ଜାଣିଥିଲା ମାଆ ସାଆନ୍ତାଣୀଙ୍କ ଦେହ ଭଲ ରହୁନାହିଁ । ବେଶୀ କିଛି ଅସୁବିଧା ହେଲା କି ? ସତ୍ୟାନନ୍ଦକୁ ଦେଖି ସିଂହାଣିଆ କହିଲେ, 'କ'ଣ ବା ତତେ କହିବି ସତ୍ୟାନନ୍ଦ? ତୁ ତ ଏ ଘର ସାଙ୍ଗରେ ରହି ଆସିଛୁ । ଏବେ ମା'ଙ୍କର ଦେହ କିଛି ଦିନ ହେଲା ଭଲ ରହୁନାହିଁ । ସବୁବେଳେ ଠାକୁର ଘରେ ବସି ରହୁଛନ୍ତି । ଭଲ ଭାବରେ କଥା କହୁନାହାନ୍ତି, କେମିତି ଗୋଟାଏ ଚିଡ଼ି ଚିଡ଼ି ଭାବ । ମୋର ମଧ୍ୟ ଆଉ ଟୋକା ବୟସ ନାହିଁ । ଷାଠିଏ ହୋଇଗଲା । ଆଉ କେତେ ବର୍ଷ ? ଏତେ ଦିନ ଖଟିଲି, ଏବେ ଟିକିଏ ବିଶ୍ରାମ ଲୋଡ଼ା । ଘରେ ତ ବିରାଡ଼ି ଛୁଆଟିଏ ନାହିଁ । କିଏ ବା ତୋ ମାଆଙ୍କ ସାଙ୍ଗରେ ଗପସପ ହେବ ? ଘରକୁ ଛୁଆଟିଏ ନଥିଲେ ସେ ଘର ଘର ନୁହେଁ । ମୁଁ ସବୁ କଥା ବୁଝିପାରୁଛି, ହେଲେ ଯାହା ଭଗବାନ ଚାହିଁବେ ନାହିଁ, ସେଥିରେ ବା ଚାରା କ'ଣ ? କିଏ ବା ଭୋଗ କରିବ ଏ ସମ୍ପତ୍ତି । ମୁଁ ଭାବୁଥିଲି କ'ଣ କି ପଛପଟେ ଯେଉଁ ଘର ଅଛି, ସେହି ଘରେ ତୁ ଆଉ ତୋର ସ୍ତ୍ରୀ ରହିଯାଅ । ତୁ ତୋର କାମକୁ ଯାଆନ୍ତୁ ଆଉ ତୋର ସ୍ତ୍ରୀ ମାଆଙ୍କୁ ଦେଖାଚାହାଁ କରନ୍ତା । ସେଥିରେ ମାଆଙ୍କର ସମୟ କଟିଯାଆନ୍ତା । ଅଚିହ୍ନା ଅଜଣା ଲୋକଟାଏ ଘରେ ରଖିଲେ ସେ ବିଶ୍ୱସ୍ତ ହେବ ନାହିଁ । ତା'ପରେ ତୁ ରହିଛୁ ଝୁମ୍ପୁଡ଼ି ବସ୍ତିରେ । ସେଠି କେତେବେଳେ ସରକାରଙ୍କର ନଜର ପଡ଼ିବ କିଏ କହିବ ? ଝୁମ୍ପୁଡ଼ି ବସ୍ତିରେ ଯେଉଁମାନେ ରହନ୍ତି, ସେମାନେ ସମସ୍ତେ ଯାଯାବର ଜାତି । କିଏ ଜାଣେ କେତେବେଳେ ତାଙ୍କର ଆସ୍ଥାନ ଉଠିବ । ତେଣୁ ତୁ ଯଦି ଏଠି ରହିଯାଆନ୍ତୁ, ତୋର ଭଲ ହୁଅନ୍ତା ଆଉ ମାଆଙ୍କ ସହିତ ଗପସପ କରିବାକୁ ଲୋକଟିଏ ମିଳନ୍ତା ।'

ହଠାତ୍ କିଛି ଉତ୍ତର ଦେଇପାରି ନଥିଲା ସତ୍ୟାନନ୍ଦ । ସିଏ ଜାଣିଥିଲା ମଞ୍ଜରୀ ଏକଥାରେ ଜମାରୁ ରାଜି ହେବ ନାହିଁ । ମଞ୍ଜରୀ ତାକୁ ଅନେକଥର କହିଲାଣି, 'ଚାଲ ଆମେ ଏଠା ଛାଡ଼ି ପଳାଇବା, ନିଜର ଘର ଖଣ୍ଡେ କରିବା । ହେଉପଛେ ଚାଳ ଘର ସେଇ ଘରର ମାଲିକ ହେବ ତମେ, ମୁଁ ହେବି ମାଲିକାଣୀ ।' ମଞ୍ଜରୀର ସ୍ୱପ୍ନକୁ ସାକାର କରିବାକୁ ସତ୍ୟାନନ୍ଦ ହଁ ହଁ କରି ସମୟ ଗଡ଼େଇ ଚାଲିଛି । ତା'ର ପଇସା ହେବ, ଘର ହେବ, ପିଲାଛୁଆ ହେବେ, ଏଭଳିଆ ସ୍ୱପ୍ନ ଉଣା ଅଧିକେ ସମସ୍ତେ ଦେଖନ୍ତି ।

ସତ୍ୟାନନ୍ଦ ଫେରିଆସିଲା । ମନକୁ ମନ ଭାବିଲା ବାବୁ ବାବୁଆଣୀ ଭଲ ଲୋକ । ବିପଦ ଆପଦରେ ସାହାଯ୍ୟ କରିବେ । ସେମାନେ ଇଚ୍ଛା କଲେ ତା' ପାଇଁ ଜାଗା ଘଣ୍ଟିଏ ବୁଝିଦେବେ । ସତ୍ୟାନନ୍ଦ ରାତିରେ ସ୍ୱପ୍ନ ଦେଖିଲା, ତା'ର ଘର ତିଆରି ହୋଇଯାଇଛି । ଛୋଟିଆ ସୁନ୍ଦର ଘରଟିଏ । ମଞ୍ଜରୀ ପିଲାଙ୍କୁ ନେଇ ବ୍ୟସ୍ତ । ସବୁବେଳେ କହୁଛି ମୁନା ପାଇଁ କଣ୍ଢେଇ ଆଣ, ତା'ର କ୍ଷୀର ସରିଗଲାଣି, ଆଜି କ୍ଷୀର ଆଣିବ । ହଁ, ଆସିଲା ବେଳେ ଛୋଟ ମାଛ ଆଣିବ, ଖଟା ତରକାରି ହବ । ସତ୍ୟାନନ୍ଦ ମନକୁ ମନ ହସିଦେଲା । ତା'ର ନିଦ ଭାଙ୍ଗିଗଲା ।

ଅନେକ ଦିନ ଧରି ସତ୍ୟାନନ୍ଦ, ସିଂହାଣିଆ ବାବୁ ଦେଇଥିବା ପ୍ରସ୍ତାବ ବିଷୟରେ ଚିନ୍ତା କରୁଥିଲା । ମଞ୍ଜରୀ ଯେ ଏଭଳିଆ ପ୍ରସ୍ତାବକୁ ଗ୍ରହଣ କରିବ ନାହିଁ, ଏ ବିଷୟରେ ସେ ସ୍ଥିର ନିଶ୍ଚିତ ଥିଲା । କିନ୍ତୁ ତଥାପି କହିଦେଲେ କ୍ଷତି କ'ଣ ? ଏଥିରେ କୌଣସିମତେ କିଛି ଦିନ ପାଇଁ ଚିନ୍ତାଶୂନ୍ୟ ଭାବରେ ଥଇଥାନର ବ୍ୟବସ୍ଥା ତ ହୋଇଯିବ ! ସମୟ ସୁଯୋଗ ଦେଖି ସେ ମଞ୍ଜରୀ କାନରେ କଥାଟା ପକାଇଦେବ ।

ସେଦିନ ରାମବାବୁଙ୍କ ଘର କାମ ସାରି ଫେରିଲା ବେଳକୁ ଅନେକ ଡେରି । ମଞ୍ଜରୀ ଅପେକ୍ଷା କରି କରି ଶୋଇ ପଡ଼ିଥିଲା । ମଞ୍ଜରୀର ଅଧା ମୁକୁଳା ଦେହଟାକୁ ଦେଖି ସତ୍ୟାନନ୍ଦର ଦେହରେ ଉତ୍ତାପ ସଞ୍ଚରୀ ଗଲା । ସତରେ ଭଗବାନ ଏଭଳିଆ ଅପୂର୍ବ ଚେହେରା ମଞ୍ଜରୀକୁ କାହିଁକି ଦେଲେ ?ପୁଣି ସାମାନ୍ୟ ଦିନ ମଜୁରିଆଟା ସିଏ । ଅନ୍ୟକୁ ହାତ ପତାଇବା ପାଇଁ ଯାହାର ଜୀବନ ଗଢ଼ା, ସିଏ ପୁଣି ଏଭଳିଆ ଅମୂଲ୍ୟ ରତ୍ନର ଅଧିକାରୀ । ଏ ରତ୍ନ ଉପରେ ଝୁମ୍ପିଡ଼ିବାଲା କ'ଣ ସହରର ବାବୁ ଭାୟାମାନଙ୍କର ମଧ୍ୟ ନଜର ପଡ଼ି ଯାଇଛି । ସତ୍ୟାନନ୍ଦ ନଥିଲା ବେଳେ କେହି କେହି ତା'ର ଘର ବାଟ ଦେଇ ଶୁଷୁରି ବଜାଇ ଚାଲି ଯାଆନ୍ତି । ମଞ୍ଜରୀ କବାଟ କିଳିଦିଏ । ରାତିରେ ସତ୍ୟାନନ୍ଦ ପାଖରେ ଫେରାଦ କରେ । କୁହେ, ' ଏ ଯାଗା ଭଲ ନୁହେଁ, ଏଠି ଦିନରେ ମଧ୍ୟ ବାଘମାନଙ୍କର ଭୟ । ସମୟ ସୁବିଧା ପାଇଲେ ସେମାନେ ଝୁଣି ପକାଇବେ ।'

ସତ୍ୟାନନ୍ଦ ମଞ୍ଜରୀ ଦେହରେ ହାତ ମାରିଲା । ମଞ୍ଜରୀ ଚମକି ଯାଇ ଉଠି ପଡ଼ିଲା । କହିଲା, 'ତମର ଏତେ ଡେରି ? ମୁଁ ଅପେକ୍ଷା କରି କରି ଶୋଇପଡ଼ିଥିଲି ।' ସତ୍ୟାନନ୍ଦ ତାକୁ କୋଳକୁ ନେଲା । ତା' ମୁହଁ ଉପରେ ମୁହଁ ରଖି କହିଲା, 'ଯୋଉ ବାଘ ଆସୁ ତାକୁ ମୁଁ ଏଇ କୁରାଢ଼ୀରେ ଦୁଇଖଣ୍ଡ କରି ହାଣିଦେବି । ଦେଖାଯାଉ କିଏ ଆସୁଛି ?' ମଞ୍ଜରୀ ତା' ଚଉଡ଼ା ଛାତିକୁ ଆଉଜି ଗଲା... । କହିଲା,'ତମ ଛାତିରେ ମୁଁ ଆଶ୍ରୟ ନେଲେ ଅନୁଭବ କରେ ଏହା ହିଁ ମୋ ପାଇଁ ନିର୍ଭରଯୋଗ୍ୟ ଆଶ୍ରୟସ୍ଥଳ । ତମେ ଥିଲେ ମୋ ପାଇଁ ସବୁ ଅଛି ।'

ରାତିରେ ଶୋଇଲାବେଳେ ସତ୍ୟାନନ୍ଦ କଥାଟାକୁ ତା' କାନରେ ପକାଇ ଦେଲା । କହିଲା, 'ଯେତେହେଲେ ସେମାନେ ମତେ ଅତୀତରେ ଦାନା ପାଣି ଦେଇଛନ୍ତି । ଏବେ ତାଙ୍କର ଦରକାର ପଡ଼ିଛି । ବାବୁଙ୍କର ମଧ୍ୟ ବୟସ ହେଲାଣି । ମାଆ ସାଆନ୍ତାଣୀଙ୍କ ଦେହ ଭଲ ରହୁନି । ତୁ ତାଙ୍କୁ ଟିକିଏ ସାହାଯ୍ୟ କରନ୍ତୁ । ଆଉ ତା'ପରେ ବାବୁ ଦୟାକଲେ ସବୁ କିଛି ସମ୍ଭବ । ଯାଗାଟିଏ ମଧ୍ୟ ତାଙ୍କ ଦୟାରୁ ମିଳିପାରନ୍ତା, ନହେଲେ ଏ ସଂସାରରେ ଗରିବର କିଏ ସାହା ଭରସା ? ସିଂହାଣିଆ ବାବୁ କହିଛନ୍ତି କେବଳ ଘର କାହିଁକି ଦୁଇ ଓଳା ଯାକ ଖାଇବାକୁ ଦେବେ ଓ ମାସକୁ ମାସ କିଛି ପଇସା ମଧ୍ୟ ଦେବେ । ଆମର ତ ଯାହା ରୋଜଗାର, ସେଥିରୁ ପଇସା ବଞ୍ଚିବ କେମିତି ଯେ ଆମେ ଘର ଦ୍ୱାର କରିପାରିବୁ ? ମୁଁ ଜାଣେ ଅନ୍ୟର ଦୟାର ପାତ୍ରୀ ହେବାକୁ ତୁ ଚାହିଁବୁ ନାହିଁ । ହେଲେ ଏଠି ଦୟାର ପ୍ରଶ୍ନ ଉଠୁନାହିଁ, ଆମେ କାମ କରିବା ତା' ବଦଳରେ ପାରିଶ୍ରମିକ ନେବା । କ୍ଷତି କ'ଣ ? ତା'ପରେ ତୁ ସେଠି ରହିଲେ ମୋର ସେ ବାଘ ଫାଘକୁ ଭୟ ଆଉ ରହିବ ନାହିଁ ।' ମଞ୍ଜରୀ ଶୁଣି ଚୁପ୍ ରହିଲା, କିଛି କହିଲା ନାହିଁ । ସତ୍ୟାନନ୍ଦ ଦେଖିଲା ଔଷଧ କାମ କରୁଛି, ହୁଏତ ଟିକିଏ ସମୟ ଲାଗିପାରେ । ଲାଗୁ କ୍ଷତି କ'ଣ ?

ଯା ଭିତରେ ମହାନଦୀରେ ଅନେକ ପାଣି ବୋହି ଯାଇଛି । ସମୟ ତା' ବାଟରେ ଆଗେଇ ଯାଇଛି । ଋତୁ ପରିବର୍ତ୍ତନ ସାଙ୍ଗରେ ପରିସ୍ଥିତିର ମଧ୍ୟ ପରିବର୍ତ୍ତନ ଘଟି ଯାଇଛି । ସତ୍ୟାନନ୍ଦ ଓ ମଞ୍ଜରୀ ବର୍ତ୍ତମାନ ସିଂହାଣିଆ ବାବୁଙ୍କର ହାତ ବାରିଶି ସାଜିଛନ୍ତି । ମା' ସାଆନ୍ତାଣୀ ମଞ୍ଜରୀର କାମରେ ଖୁବ୍ ଖୁସି । ସତ୍ୟାନନ୍ଦ ସକାଳୁ ସଞ୍ଜଯାଏଁ ନିଜ କାମକୁ ଯାଏ, ସନ୍ଧ୍ୟାରେ ଫେରି ସିଂହାଣିଆ ବାବୁଙ୍କୁ କାମରେ ସାହାଯ୍ୟ କରେ । ଏବେ ମଞ୍ଜରୀ ଆଉ ସିଂହାଣିଆ ବାବୁଙ୍କୁ ଆଡ଼ ହୁଏ ନାହିଁ । ମଝିରେ ମଝିରେ ସିଂହାଣିଆ ବାବୁ ତା' ଭଲ ମନ୍ଦ କଥା ପଚାରି ବୁଝନ୍ତି । କଥା ଛଳରେ ସିଂହାଣିଆ ବାବୁ କୁହନ୍ତି,

'ମାଆ ସାଆନ୍ତାଣୀଙ୍କ କଥା ବୁଝୁଥିବୁ । କାରଣ ସେ ମାନସିକ ରୋଗରେ ପୀଡ଼ିତା ।' ମଞ୍ଜରୀ ହଠାତ୍ କିଛି ବୁଝି ପାରିଲା ନାହିଁ । ଏଭଳିଆ ଘରେ ପୁଣି ମାନସିକ ଅଶାନ୍ତି ବା କ'ଣ ହୋଇପାରେ ? ସକାଳୁ ସକାଳୁ ମଞ୍ଜରୀର କାମ ଆରମ୍ଭ ହୋଇଯାଏ । ମାଆଙ୍କର ଠାକୁର ପୂଜା ପାଇଁ ଫୁଲ ତୋଳିବାଠାରୁ ଆରମ୍ଭ କରି ତାଙ୍କୁ ଓ ବାବୁଙ୍କୁ ସକାଳର ଚାହା ଦେବା ଏବଂ ରୋଷେଇ କାର୍ଯ୍ୟରେ ସାହାଯ୍ୟ କରିବା ପର୍ଯ୍ୟନ୍ତ କାମରେ ଲାଗିଥାଏ । ସକାଳୁ ସଞ୍ଜଯାଏ ମଞ୍ଜରୀ କାମରେ ବ୍ୟସ୍ତ ରୁହେ । ସନ୍ଧ୍ୟାବେଳେ ସତ୍ୟାନନ୍ଦ କାମରୁ ଫେରେ । ମଞ୍ଜରୀର ଛୁଟି ହୁଏ । ଉଭୟେ ସ୍ୱାମୀ ସ୍ତ୍ରୀ ମିଶି ରୋଷେଇ କରନ୍ତି । ସକାଳ ଯାକର କାମ ବିଷୟରେ ସେ ସତ୍ୟାନନ୍ଦକୁ କୁହେ । ସତ୍ୟାନନ୍ଦ କେବଳ ହସି ଦେଇ କୁହେ, 'ସେମାନେ ଆମର ମାଆ ବାପାଙ୍କ ଭଳି । କାରଣ ଜନ୍ମରୁ ଆମେ ବି ମାଆ ବାପାଙ୍କ ସ୍ନେହ କ'ଣ ଜାଣିନାହୁଁ ।' ମଞ୍ଜରୀ କୁହେ, 'ହଁ ସତକଥା । ମାଆଙ୍କର ମୋ ପ୍ରତି ସ୍ନେହ ମୁଁ କଦାପି ଭୁଲି ପାରିବି ନାହିଁ ।'

ଏଇ କିଛି ଦିନ ହେଲା ସିଂହାଣିଆ ବାବୁଙ୍କର ମନ ଭଲ ରହୁନି । ତା'ର ଏକମାତ୍ର କାରଣ ହେଲା ମାଆ ସାଆନ୍ତାଣୀଙ୍କ ସ୍ୱାସ୍ଥ୍ୟ ଅବସ୍ଥା । ସେ ଦିନକୁ ଦିନ ଦୁର୍ବଳ ଦେଖାଯାଉଛନ୍ତି । ଆଉ ଆଗ ଭଳିଆ ଚଳଚଞ୍ଚଳ ହେଉ ନାହାନ୍ତି । ସୁଧାମଣି ତାଙ୍କୁ ଅନେକ ଥର କହିଲେଣି, 'ଆଉ ନୁହେଁ, ମୋତେ ଆରପାରିରୁ ଡାକରା ଆସିଲାଣି ।' ସିଂହାଣିଆ ବାବୁ କଥାର ମୋଡ଼ ବଦଳାଇବାକୁ ଚେଷ୍ଟା କରନ୍ତି । କୁହନ୍ତି, 'ଏ ଦୁନିଆରେ ଅନେକଙ୍କର ଏଭଳିଆ ସମସ୍ୟା ଅଛି ସୁଧାମଣି, ସେମାନେ ତ ପୁଣି ଆନନ୍ଦରେ ଅଛନ୍ତି । ତମେ ଯଦି ଏତେ ଜିଦ୍ କରୁଛ, ତେବେ ଚାଲ ଆମେ ଦୁହେଁ ଅନାଥାଶ୍ରମ ଯିବା ସେଇଠୁ ଛୁଆଟିଏ ଆଣି ପାଳିବା । ସେଇ ହେବ ଆମ ଛୁଆ । ଭଗବାନ ସେମାନଙ୍କୁ ମଧ୍ୟ ଜନ୍ମ ଦେଇଛନ୍ତି । ତାଙ୍କ କଥା ତ କିଏ ଜଣେ ବୁଝିବ ? ତମେ ଚାଲ, ତମର ଏ ବୟସରେ ମଧ୍ୟ ସନ୍ତାନଟିଏ ଦରକାର । ତମ ସାଙ୍ଗରେ ସିଏ ହସିବ, ଖେଳିବ, ଗୀତ ଗାଇବ । ମୁଁ ମଧ୍ୟ ଟିକିଏ ଶାନ୍ତିରେ ନିଶ୍ୱାସ ମାରିବି ।' ସୁଧାମଣି ସିଂହାଣିଆଙ୍କ ହାତ ଧରି କୁହନ୍ତି, 'ଯେତେହେଲେ ସେ ପର ଛୁଆ । ତାକୁ ମୁଁ କେମିତି ନିଜ ରକ୍ତର ବୋଲି ଭାବିବି । ସେଇଥିପାଇଁ ମୁଁ କହୁଥିଲି କି... ।' ସିଂହାଣିଆ ବାବୁ ରାଗି ଚିତ୍କାର କରନ୍ତି, 'ପୁଣି ସେଇ କଥା ? ସେତିକି ଥାଉ ଚାଲ ଯିବା ମନ୍ଦିରକୁ । ଦେଖୁଛ ସନ୍ଧ୍ୟା ହେଲାଣି । ଘଣ୍ଟ ବାଜିଲାଣି । ଯାହାର କେହି ନାହାନ୍ତି ତା'ର ଭଗବାନ ତ ଅଛନ୍ତି ।' ସୁଧାମଣି ଡାକ ଛାଡ଼ନ୍ତି, 'ମଞ୍ଜରୀ ମଞ୍ଜରୀ, ସନ୍ଧ୍ୟା ଦେଲୁ ? ସତରେ ମଞ୍ଜରୀ ମୋର କେତେ କାମ କରୁଛି । ତା'ର କିଛି ଥଇଥାନର ବନ୍ଦୋବସ୍ତ କର ।' ସିଂହାଣିଆ ବାବୁ କିଛି କହନ୍ତି

ନାହିଁ । କାମର ବାହାନା କରି ବାହାରକୁ ଚାଲି ଯାଆନ୍ତି ।

ସେଦିନ ଥିଲା ସାବିତ୍ରୀ ଅମାବାସ୍ୟା । ସକାଳୁ ସକାଳୁ ମଞ୍ଜରୀ ଉଠି ନିଜର ନିତ୍ୟକର୍ମ ସାରି ଦେଇଥାଏ । ଆଜି ତା'ର ନିର୍ଜଳା ଉପବାସ । ଦିନ ସାରା ଖାଲି ଫଳମୂଳରେ ରହିବ । ରାତିରେ ଯାହା ଖାଇବା କଥା । ସକାଳୁ ସକାଳୁ ମାଆ ସାଆନ୍ତାଣୀଙ୍କୁ ନେଇ ମନ୍ଦିର ଯିବ ବୋଲି ଉଆସ ଭିତରକୁ ଆସିଲା । ସାଆନ୍ତ ନାହାନ୍ତି, ଖୁବ୍ ଭୋରୁ ଉଠି ସକାଳୁ ବୁଲିବା ପାଇଁ ବାହାରି ଯାଆନ୍ତି । ସାଆନ୍ତାଣୀ ଡେରିରେ ଉଠନ୍ତି । ଉଠିବା କ୍ଷଣି ସେ ମଞ୍ଜରୀକୁ ଡାକ ପକାନ୍ତି । ଆଜି ସେ ଡାକି ନାହାନ୍ତି । ତା'ପରେ ସେ ମନ୍ଦିର ଯିବେ । ଏଣୁ ସକାଳୁ ନିଶ୍ଚୟ ଗାଧୋଇ ପଡ଼ିଥିଲେ । ବର୍ଷକୁ ଥରେ ଏହି ସାବିତ୍ରୀ ବ୍ରତଟି ସେ ନିଷ୍ଠାର ସହ ପାଳନ କରନ୍ତି । ମଞ୍ଜରୀ ଯାଇ ସାଆନ୍ତାଣୀଙ୍କ ରୁମ୍‌ର କବାଟ ବାଡ଼େଇଲା । କବାଟ ଭିତରୁ ବନ୍ଦ ଥିଲା । ଆରେ ସାହେବ ତ ନାହାନ୍ତି । ତେବେ ସାଆନ୍ତାଣୀ କବାଟ ବନ୍ଦ କରି ଏପର୍ଯ୍ୟନ୍ତ କ'ଣ ଶୋଇଛନ୍ତି ?

ମା' ମା' ଡାକ ଛାଡ଼ିଲା ମଞ୍ଜରୀ । କବାଟ ବାଡ଼େଇଲା, ଭିତରୁ ଡାକ ଶୁଣି ଦଉଡ଼ି ଆସିଲେ ପୂଜାରୀ, ଚାକର ସବୁ । ସେମାନେ ସମସ୍ତେ ଉଚ୍ଚସ୍ୱରରେ ଡାକ ଛାଡ଼ିଲେ ମାଆ ମାଆ... । ଭିତରୁ କିଛି ସ୍ୱର ଶବ୍ଦ ନାହିଁ, ବୋଧହୁଏ ରାତିରେ ମାଆ ସାଆନ୍ତାଣୀଙ୍କୁ ନିଦ ହୋଇନଥିବ, ପାହାନ୍ତିଆ ପହରକୁ ନିଦ ଆସିଯାଇଥିବ ! ତେବେ ଏତେ ଚିତ୍କାର କଲେ ମଧ୍ୟ ନିଦ ଭାଙ୍ଗୁନାହିଁ କାହିଁକି ? ଏହି ସମୟରେ ସତ୍ୟାନନ୍ଦଟା ହେଲେ ଥାଆନ୍ତା । ହେଲେ ସେ ମଧ୍ୟ ବଜାର ଯାଇଛି ଫଳମୂଳ ଆଣିବାକୁ । କାହାର କିଛି ବୁଦ୍ଧି ଜୁଟିଲା ନାହିଁ । ଘରେ ଅନ୍ୟ କେହି ନାହାନ୍ତି । ସମସ୍ତଙ୍କ ମିଳିତ ଚେଷ୍ଟାରେ କବାଟକୁ ଖୁବ୍ ଜୋର୍‌ରେ ଧକ୍କା ମାରି ଖୋଲି ଦିଆଗଲା । କବାଟ ଖୋଲି ଗଲା । ସାଆନ୍ତାଣୀ ଶୋଇଛନ୍ତି ଖଟ ଉପରେ । ନିଘୋଡ଼ ନିଦରେ । ଛାତିରେ ସ୍ୱାମୀଙ୍କର ଫଟୋ । ଆରେ ସେ କ'ଣ ଉଠି ପଡ଼ିଥିଲେ କି ? ମଞ୍ଜରୀ ମା' ମା' ଡାକି ଗୋଡ଼ ତଳେ ପଡ଼ିଗଲା । ଛାତିକୁ ଖୁବ୍ ଜୋର୍‌ରେ ହଲାଇ ଦେଲା । ଆରେ ଏ କ'ଣ, ମାଆ କାହିଁକି ଉଠୁନାହାନ୍ତି ? ଚାକର ପୂଜାରୀ ସେମିତି ଠିଆ ହୋଇଥାନ୍ତି । ଆରେ ଏ କ'ଣ ଦେହ ଏକଦମ ଥଣ୍ଡା । ନିରବ ନିଶ୍ଚଳ ଶରୀର ।

ସମସ୍ତେ ଉଚ୍ଚ ସ୍ୱରରେ ଚିତ୍କାର କରି ଉଠିଲେ । ଏହି ସମୟରେ ଗେଟ ପାଖରେ ଶୁଭିଲା ସିଂହାଣିଆ ବାବୁଙ୍କର ସ୍ୱର । ଏ କ'ଣ ଘର ବାହାରେ କାହାର ଦେଖା ନାହିଁ । ଏବେ ତ ମଞ୍ଜରୀ ଫୁଲ ତୋଳିବା କଥା, ମାଳି ଆସି ଗଛରେ ପାଣି ଦେବା କଥା । ସିଂହାଣିଆ ବାବୁ ଚିତ୍କାର କଲେ, 'ରାମ ରାମ, ମଞ୍ଜରୀ, ମଞ୍ଜ... ? ' ସମସ୍ତେ

ଏକାଥରକେ ଚିତ୍କାର କରି ଦଉଡ଼ି ଗଲେ ସିଂହାଣିଆ ବାବୁଙ୍କ ପାଖକୁ । ବାବୁ ମାଆ... ମାଆ... ? ଆରେ ମା' ତ ଶୋଇଥିଲେ ପୁଣି ତାଙ୍କର କ'ଣ ହେଲା ? ଦଉଡ଼ି ଆସିଲେ ସିଂହାଣିଆ ବାବୁ । ସୁଧାମଣିଙ୍କୁ ଦେଖି ଦେଇ ତାଙ୍କରି ଉପରେ କଚାଡ଼ି ହୋଇ ପଡ଼ିଲେ ଏବଂ ଚେତା ହରାଇ ଦେଲେ । ଡାକ୍ତର ଡାକିବା ଦରକାର ପଡ଼ିଲା ନାହିଁ । ଯାହା ବିଧି ନିର୍ଦ୍ଧାରିତ ତାକୁ ଅଟକାଇବ କିଏ ?

ଘଟଣାଟାକୁ ଭଲ ଭାବେ ବୁଝି ନେଇଥିଲେ ସିଂହାଣିଆ ବାବୁ । ବର୍ତ୍ତମାନ ସୁଧାମଣି ନାହାନ୍ତି । ସେ ତାଙ୍କର ଅବର୍ତ୍ତମାନରେ ବଞ୍ଚିବେ ବା କିପରି ? ସାଇ ପଡ଼ିଶା ବାଲାଏ ଆସି ଅନେକ ବୁଝାଇଲେ । କହିଲେ, ଯଦି ଜୀବନ ଅଛି ତା' ହେଲେ ମୃତ୍ୟୁ ମଧ୍ୟ ଅଛି । ଏଠି ସମସ୍ତେ ଆସନ୍ତି ଏକା, ଯାଆନ୍ତି ଏକା । ଜୀବାତ୍ମା ପରମାତ୍ମା ମଝିରେ ରହିଯାଏ ମାୟା, ମୋହ, ବନ୍ଧନ । ଯାହା କ୍ଷଣସ୍ଥାୟୀ କେବଳ କେତୋଟି ସମୟର ବ୍ୟବଧାନ । ଚାଳିଶ ବର୍ଷର ସମୟ କିଛି କମ୍ ସମୟ ନୁହେଁ । ଏହି ଚାଳିଶ ବର୍ଷରେ କମ୍ ସ୍ନେହ ପ୍ରେମ ତାଙ୍କୁ ଦେଇ ନାହାନ୍ତି ସୁଧାମଣି । ଏଣୁ ଏ ସମୟକୁ କ'ଣ ଭୁଲିଯିବା ସମ୍ଭବ ? ସୁଧାମଣିଙ୍କ ସାଙ୍ଗରେ ବିତାଇଥିବା ପ୍ରତିଟି ମୁହୂର୍ତ୍ତକୁ ସେ ଝୁରି ହେଉଥିଲେ ।

ଜମିଦାରଙ୍କ ଉଆସଟା ଖାଁ ଖାଁ ଲାଗୁଛି । ଘରୁ ଲକ୍ଷ୍ମୀ ଚାଲିଗଲେ ଯାହା ହୁଏ । ବଗିଚାର ଫୁଲଗୁଡ଼ାକ ମଧ୍ୟ ମଉଳି ଗଲେଣି । ବଗିଚାର ଗଛମାନଙ୍କରୁ ପତ୍ର ଝଡ଼ୁଛି । ସମସ୍ତେ ଯେମିତି ସାଆନ୍ତାଣୀଙ୍କ ଆବର୍ତ୍ତନରେ ଦୁଃଖରେ ଭାଙ୍ଗି ପଡ଼ୁଛନ୍ତି । ଭାଙ୍ଗି ପଡ଼ୁଛନ୍ତି ସିଂହାଣିଆ ବାବୁ । ତାଙ୍କର ମନ ଆଉ କୌଣସିଥିରେ ସ୍ଥିର ରହୁନାହିଁ । ବ୍ୟବସାୟରେ ମଧ୍ୟ ତାଙ୍କର ମନ ନାହିଁ । ଅନେକ ଦିନ ହେଲା ସେ ଘରୁ ବାହାରକୁ ଯାଇ ପାରୁ ନାହାନ୍ତି । ସବୁବେଳେ କହୁଛନ୍ତି ଏ ଘର, ଏ ସମ୍ପତ୍ତି ହେବ କ'ଣ ? ସତ୍ୟାନନ୍ଦ ଓ ମଞ୍ଜରୀ ତାଙ୍କ କର୍ତ୍ତବ୍ୟରେ ଖିଲାପ କରୁନାହାନ୍ତି । ଏଣିକି ମଞ୍ଜରୀ ଉପରେ ଘର ଦାୟିତ୍ୱ ବଢ଼ିଯାଇଛି । ସତ୍ୟାନନ୍ଦର ମଧ୍ୟ କାମରେ ଉନ୍ନତି ଘଟିଛି । ସେ ଏବେ ଛୋଟ କାଟର ପେଟି ଠିକାଦାର ବନି ଯାଇଛି । ତା' ଘରେ ଏବେ ଲୋକଙ୍କ ଭିଡ଼ ଜମୁଛି । କିଛି ଲୋକ ଆସି ତାଙ୍କର ଘର କାମର ସଂପୂର୍ଣ୍ଣ ଦାୟିତ୍ୱ ସତ୍ୟାନନ୍ଦ ହାତରେ ସଁଅପି ଦେଉଛନ୍ତି ।

ସତ୍ୟାନନ୍ଦ ସେ ବାବଦରେ ଭଲ ଦୁଇ ପଇସା ଲାଭ କଲାଣି । ଏଥର ସେ ଭାବୁଛି ମଞ୍ଜରୀକୁ ଖୁସି କରି ଦେବ । ପାଖରେ ଛୋଟିଆ ଜାଗା କିଣି ଘର ଖଣ୍ଡିଏ କରିବ । ହେଉ ପଛେ ଚାଳ ଘର । ପରେ ତାକୁ କୋଠା କରିବ । ମଞ୍ଜରୀକୁ ହଠାତ୍ ଦିନେ ଏ ଶୁଭ ସମ୍ବାଦ ଦେଇ ଚକିତ କରିଦେବ । ଏବେ ମଞ୍ଜରୀକୁ ଆଉ ସମୟ ମିଳୁନାହିଁ ।

କାରଣ ସିଂହାଣିଆ ବାବୁଙ୍କର ସବୁ କଥା ତାକୁ ବୁଝିବାକୁ ପଡୁଛି । ସିଂହାଣିଆ ବାବୁ ମଧ୍ୟ ଏବେ ଧୀରେ ଧୀରେ ତା' ଉପରେ ନିର୍ଭର କରିବାକୁ ଆରମ୍ଭ କଲେଣି ।

ସେଦିନ କ'ଣ ଦିନ ବାର ଥିଲା ମଞ୍ଜରୀର ମନେ ନାହିଁ । ଛୁଟିଦିନରେ ସତ୍ୟାନନ୍ଦର ବହୁତ କାମ ଥାଏ । କାରଣ ଲୋକମାନେ ଛୁଟି ଦିନରେ ଘର କାମ କରିବାକୁ ଭଲ ପାଆନ୍ତି । ସେଦିନ କାହାର ଛାତ ପଡ଼ିବାର ଥାଏ, ଏଣୁ ସକାଳୁ ସତ୍ୟାନନ୍ଦ ମୂଲିଆ ମୂଲିଆଣୀ ଯୋଗାଡ଼ କରି ବାହାରି ଯାଇଛି । ମଞ୍ଜରୀକୁ କହିଯାଇଛି ଫେରୁ ଫେରୁ ଡେରି ହେବ । ମଞ୍ଜରୀ ସିଂହାଣିଆ ବାବୁଙ୍କୁ ଖାଇବାକୁ ଦେଇ ନିଜେ ଖାଇ ନିଜ ଘରେ ବିଶ୍ରାମ ନେଉ ନେଉ କେତେବେଳେ ନିଦ ଆସିଯାଇଛି ସେ ଜାଣିପାରିନି । ଦିନସାରା କାର୍ଯ୍ୟବ୍ୟସ୍ତ ଥିଲା, ଏଣୁ ହାଲିଆ ହୋଇ ପଡ଼ିଥିଲା । ଘରେ କେହି ନାହାନ୍ତି, ଏଣୁ ବେଶବାସ ସେମିତି କିଛି ଠିକ୍ ଠାକ୍ ନଥିଲା । ସେମିତି ଅସଜ ଅବସ୍ଥାରେ ନିଜେ ନିଜକୁ ଖଟ ଉପରେ ପକାଇ ଦେଇଥିଲା । ମନକୁ ମନ ଅନାବନା ଗୀତର ସ୍ୱର ମେଲି ଦେଇଥିଲା । ସକାଳୁ ତାକୁ କେମିତି ଖୁସି ଖୁସି ଲାଗୁଥିଲା । କାରଣ ପୂର୍ବଦିନ ରାତିରେ ସତ୍ୟାନନ୍ଦ କହିଥିଲା, ଆଉ ବେଶୀ ଦିନ ଏ ଘରେ ରହିଲେ ମାୟା ଲାଗିଯିବ । ମୁଁ ଖୁବ୍ ଶୀଘ୍ର କିଛି ଗୋଟାଏ ବ୍ୟବସ୍ଥା କରୁଛି । ସେଇଠି ଦୁଇବଖରା ଘର ତୋଳି ତୋର ମୋର ରହିବା । ତୁ ହେବୁ ତୋ ରାଇଜର ରାଣୀ ଏବଂ ମୁଁ ହେବି ତୋର ରାଜା । ମଞ୍ଜରୀ ଏକ ସୁନ୍ଦର ରାଇଜର ସ୍ୱପ୍ନରେ ମସ୍‌ଗୁଲ୍ ଥିଲା ।

'ଆରେ ... ରେ... ଏ କ'ଣ ସବୁ ହଉଛି ।' ସତେ ଯେପରି କିଏ ଜଣେ ତା'ର ଅଣ୍ଟା ଭିତରେ ହାତ ପୂରାଇ ସୁଲୁ ସୁଲୁ କରୁଥିଲା । 'ଓଃ ଛାଡ଼ମ, କାଲି ରାତିରେ ପରା ସବୁ ସରିଛି ପୁଣି ଆଜି କ'ଣ... ?'

'ସତରେ ମଞ୍ଜୁ ତମକୁ ଯେତେ ପାଖରେ ପାଇଲେ ମଧ୍ୟ ମନ ମରୁନାହିଁ ।'

'ହଉ ଛାଡ଼ ଛାଡ଼, ବାବୁଙ୍କର ଚାହା ଖାଇବା ସମୟ ହୋଇଗଲାଣି । ସେ ବର୍ତ୍ତମାନ ଉଠି ଡାକ ଛାଡ଼ିବେ ।'

'ଡାକ ଛାଡ଼ନ୍ତୁ, ତମକୁ ମୁଁ ଏଠୁ ଛାଡ଼ିଲେ ତ ?'

'ହଉ ସେତିକି ଥାଉ ଆଜି ତମର ପରା ଡେରିରେ ଫେରିବାର ଥିଲା?'

ହସି ହସି ମଞ୍ଜରୀ ତାକୁ ପେଲିଦେଲା... ନିଜେ ଦୁମ୍ କରି ଉଠି ଠିଆ ହୋଇଗଲା । ତା' ସ୍ୱପ୍ନ ଭାଙ୍ଗିଗଲା... । ଏକ ବିରାଟ ଶବ୍ଦ କରି କବାଟଟା ଖୋଲିଗଲା ଏବଂ ଖୋଲା କବାଟ ଦେଇ କିଏ ଜଣେ ଦ୍ରୁତଗତିରେ ଚାଲିଗଲା ।

ମଞ୍ଜରୀ ଦଉଡ଼ି ଗଲା କବାଟ ପାଖକୁ । ଆରେ ଏ କ'ଣ ଦେଖୁଛି ସିଏ... ? ଏ ଯେ ସିଂହାଣିଆ ବାବୁ... ।

ମଞ୍ଜରୀ ଚିତ୍କାର କରି ତଳେ ପଡ଼ିଗଲା । ତା' ଅଙ୍ଗ ପ୍ରତ୍ୟଙ୍ଗରେ ଅସମ୍ଭବ ଯନ୍ତ୍ରଣା । ସତେ ଯେପରି ତାକୁ ଖିନ୍‌ଭିନ୍ କରି ସେ ରାକ୍ଷସଟା ଖାଇ ଦେଇ ପଳାଇ ଯାଉଛି । ଆରେ ଏ କ'ଣ, ଏସବୁ ନଖ ରାମ୍ପୁଡ଼ା ଦାଗ ତା'ର ସର୍ବାଙ୍ଗରେ ଭରି ଦେଇଛି ? ଓଃ ଭଗବାନ ତାକୁ ଏଭଳିଆ ଦଣ୍ଡ କାହିଁକି ଦେଲେ ? କି ଅପରାଧ କରିଥିଲା ସିଏ । କ'ଣ ବୋଲି ଫେରାଦ ଦେବ ସତ୍ୟାନନ୍ଦ ଆଗରେ ? କହିଦେବ ତାକୁ,ତମେ ଯାହାକୁ ଭରସା କରିଥିଲ, ଦେବତା ବୋଲି ଭାବୁଥିଲ, ଏଇ ଦେଖ ସେ ରାକ୍ଷସଟା କେମିତି ମୋ ଦେହ ସାରା ଆମ୍ପୁଡ଼ି କାମୁଡ଼ି ରକ୍ତାକ୍ତ କରି ଦେଇଛି । ମଞ୍ଜରୀ ଖୋଲିଦେବ ତା' ଦେହକୁ, ଦେଖେଇ ଦେବ ସେଇ କ୍ରୁର ରାକ୍ଷସ ଛାଡ଼ିଦେଇ ଯାଇଥିବା କ୍ଷତିଚିହ୍ନର ଚିହ୍ନ ସବୁକୁ । ଆଜି ଆସୁ ସତ୍ୟାନନ୍ଦ ।

ସତ୍ୟାନନ୍ଦ ଆସିଲା ଅନେକ ଡେରିରେ ।

ଘରେ ଅସମ୍ଭବ ନୀରବତା ।

'ମଞ୍ଜରୀ...ମଞ୍ଜୁ... ଆରେ ତମେ ଏ ଅନ୍ଧାରରେ ବସିଛ, ଏ ଘରେ ଆଜି କ'ଣ ଆଲୁଅ ନାହିଁ । ଆଜି କ'ଣ ବାବୁଙ୍କ ପାଇଁ ରୋଷେଇ କରିବନି କି ? ତମର କ'ଣ ହୋଇଛି ? ପାଟିରୁ ଭାଷା କାହିଁକି ବାହାରୁନି ?' ମଞ୍ଜରୀ ଚିତ୍କାର କରି ଉଠିଲା । କହିଲା, 'ଦୟା କରି ଆଲୁଅ ଜାଳନି । ଆଲୁଅରେ ତମେ ମୋର ଦେହ ଦେଖିଲେ ଡରିଯିବ । ସହିପାରିବ ତ । ଦିନବେଳେ ବାଘଟା ପଶି ଆସିଥିଲା । ମତେ ଝୁଣି ଦେଇଛି । ମୋର ରକ୍ତ ପାନ କରିଛି । ଆଉ ଏ ଘରେ ମୂହୁର୍ତ୍ତେ ମଧ୍ୟ ରହିବିନି । ଚାଲ ବର୍ତ୍ତମାନ ପଳେଇ ଚାଲ । ଅନ୍ଧାରର ସୁଯୋଗ ନେଇ ବାଘଟା ପୁଣି ଆସିପାରେ । ମୋର ଦରକାର ନାହିଁ ଆଶ୍ରୟସ୍ଥଳ... । ଆମେ ଖୁବ୍ ଭଲରେ ରହିବା ଆମ ବସ୍ତିରେ । ହେଉ ପଛେ ଝୁମ୍ପୁଡ଼ି । ଉପରେ ଥିବ ଖୋଲା ଆକାଶ । ଆକାଶରେ ଜଳୁଥିବେ ତାରାମାନେ । ଆଉ ଝୁମ୍ପୁଡ଼ି ଭିତରେ ତମେ ଏବଂ ମୁଁ । ସେଇ ଆମ ଦୁହିଁଙ୍କର ନିର୍ଭୟ ଆଶ୍ରୟସ୍ଥଳ ।' ସତ୍ୟାନନ୍ଦ କିଛି କହିବା ପୂର୍ବରୁ ମଞ୍ଜରୀ ତା'ର ହାତଧରି ଟାଣି ଟାଣି ନେଉଥିଲା କଳା ମୁଚୁ ମୁଚୁ ପିଚୁ ରାସ୍ତା ଉପରକୁ । ରାସ୍ତାକଡ଼ର ଆଲୁଅରେ ଦିଶୁଥିଲା ଝୁମ୍ପୁଡ଼ି । ଝୁମ୍ପୁଡ଼ି ଭିତରୁ ଦିଶୁଥିଲା ମିଞ୍ଜିମିଞ୍ଜି ଆଲୁଅ । ସେଇ ଆଡ଼କୁ ମୁହାଁଇଥିଲା ସିଏ ।

❖

# ରେବତି

ଲୋ ନିଆଁ, ଲୋ ଚୁଲୀ... ?

ତୁ ମୋର ନା ପକେଇବୁ କିଲୋ ?

ବାଡ଼ି ଖଣ୍ଡେ ଧରି ଘର ଭିତରୁ ଦଉଡ଼ି ଆସିଲା ଶିବ । ରେବତିର ବାପା ।

ପଛେ ପଛେ ରୁକ୍ମିଣୀ । ରେବତିର ସାବତ ମା' ।

ରୁକ୍ମିଣୀ ଝାଡୁ ଖଣ୍ଡେ ଧରି ଶିବ ପଛ ଆଡ଼େ ଠିଆ ହୋଇଥିଲା ।

ସତେ ଯେପରି ଏଇ ଛୁଆ ଝୁଣି ଯିବ କି ଆଉ ?

ସତେ ଯେପରି ଅଦିନିଆ ମେଘ ବରଷି ଯିବ କି ଆଉ ?

ରେବ ଛୋଟିଆଟିଏ ହୋଇଥିଲା । ଚାରିବର୍ଷର । କଥା କୁହା କଣ୍ଢେଇ ପରି ଚେହେରା । ବେଶ ଡଉଲ ଡାଉଲ । ଘର ଭିତରେ ନାଚୁଥିଲା, କୁଦୁଥିଲା । ଏଇ ଶିବ କାନ୍ଧରେ କେତେ ନାଉ ହୋଇଥିବ । ମାଆ କାନି ଛାଡୁନଥିଲା । ମାଆର ପ୍ରକୃତ ସ୍ନେହ ପାଇଲା ପୂର୍ବରୁ ଗାଁରେ ଅକାଳ ପଡ଼ିଲା । କେତେ କୁଆଡ଼େ ମଲେ... ଶେଷକୁ ପାଳି ପଡ଼ିଲା ତୁଳସୀର । ଗୋଟାଏ ଦୁଇଟା ପତଳା ଝାଡ଼ା, ତା'ପରେ ସବୁ ଶେଷ । ଶିବ ଖୁବ କାନ୍ଦିଥିଲା । ଦେଖଣାହାରୀଏ ଆଃ ଆଃ ଚୁ ଚୁ କଲେ । ରେବ ମାଆଙ୍କୁ ଯାବୁଡ଼ି ଧରିଥାଏ । ତୁ ଉଠୁ ମା... ଶୋଇଛୁ କାହିଁକି - ରାତି ହେଲାଣି, ବତୀ ଲଗାଉନୁ କିଆଁ... ତା' ପରେ ତା'ର ପାଟି ବନ୍ଦ - ପାଖ ଶ୍ମଶାନକୁ ଚାଲିଗଲା ସିଏ । ରେବ ହୋଇଗଲା ମାତୃହୀନା ସର୍ବହରା ବାଳିକାଟିଏ ।

ଘରେ ଶିବର ମା... ତା'ର ମଧ୍ୟ ବୟସ ହେଲାଣି । ଅନ୍ଧାର ହେଲେ ଦେଖାଯାଏନି - ସେ ଯାହା ଟିକିଏ ନାତୁଣୀଟାକୁ ତେଲ ମାଲିସ କରୁଥିଲା । ଶୋଇଲା ବେଳେ ଧୋରେ ବାଇଆ ଧୋ ଗୀତ ଗାଉଥିଲା । ଧୀରେ ସେ ସବୁ ବନ୍ଦ ହୋଇଗଲା... ଗଲା ପୂର୍ବରୁ କହିଯାଇଥିଲା, ଶିବରେ ଘରେ ପୁଣି ତ କିଏ ଗୋଟାଏ ରହିବ, ନ ହେଲେ ରେବ କଥା କିଏ ବୁଝିବ ? ତୁ ଆଉ ଗୋଟିଏ ଘରକୁ ଆଣେ - ବାସ୍ ଶେଷ ମୁହୂର୍ତ୍ତର କଥା ରଖିବାକୁ ପଡ଼ିବ । ସାହି ପଡ଼ିଶାଙ୍କ କଥା ନେଇ ଘରକୁ ଆସିଥିଲା ରୁକ୍ମିଣୀ.... ପ୍ରଥମ କିଛିଦିନ ପରେ ତା'ର ନିଜ ରୂପ ପଦାକୁ ଆସିଲା - ହେଲେ ଶିବ ତାରି ପଛେ ପଛେ ବୁଲିଲା - ରେବ ହୋଇଗଲା ସେଇ ଆକ୍ରୋଶର ଶିକାର । ଏପରିକି ବଢିଲା ଝିଅଟାକୁ ସେ ଚାଷବାସ ଦେଖିବାକୁ ବିଲକୁ ପଠାଇଲା ।

ତା' ଘର ପାଖାପାଖି ବିଶ୍ୱନାଥର ଘର । ଦୁଇତିନି ଘର ଛାଡ଼ିକି । ବାପା ତାର ଗାଁର ମୁରବୀ । ଘନ ମଉସାଙ୍କର ମୁରବୀ ହିସାବରେ ପାଖ ଦୁଇ ତିନି ଗାଁରେ ମଧ୍ୟ ନାଁ ଡାକ ଅଛି । ଗାଁର ଭଲମନ୍ଦ ହାନିଲାଭରେ ତାଙ୍କୁ ଖୋଜା ପଡ଼େ । ଜମିଦାର ଘର ସିଏ - କୋଡ଼ିଏ ମାଣ ସମ୍ପତ୍ତି - ଦେଖିବାକୁ କେହି ନାହିଁ ଏକା ବିଶ୍ୱନାଥ ଛଡ଼ା । ବିଶିଆ ମଧ୍ୟ ବାପାଙ୍କ କଥାରୁ ବାହାରି ଯାଇନାହିଁ । କିଛିଦିନ ଧରି ଘନଶ୍ୟାମ ବାବୁ ଓରଫ ଘନ ମଉସା ଜମିଜମା କାମ ବିଶ୍ୱନାଥଙ୍କ ଜିମା ଛାଡ଼ି ଦେଇ ମନ୍ଦିର ତୋଳାରେ ମନ ଦେଇଛନ୍ତି - ଗାଁରେ କୋଉ କାଳୁ ଶିବ ଲିଙ୍ଗ ପୂଜା ପାଉଥିଲେ । ସେଠି ବର୍ତ୍ତମାନ ମନ୍ଦିର ତୋଳା ଚାଲିଛି । ଗାଁର ପ୍ରତି ସାହି ବସ୍ତିରୁ ଚାନ୍ଦାଭେଦା ଯୋଗାଡ ହୋଇଛି । ଘନଶ୍ୟାମ ବାବୁ ମୁଖ୍ୟ କାରପଟଦାର ସାଜିଛନ୍ତି । ଏହି ବିଶ୍ୱନାଥ ଯୋଗୁଁ ଆଜି ରେବତିର ଘରେ ଯେତେ ଝାମେଲା । ତା'ର ଆଉ ରେବତିର ଯେଉଁ ସମ୍ପର୍କ ଗଢ଼ି ଉଠିଛି ତାହାର ଖବର କୌଣସିମତେ ଶିବଚରଣର କାନରେ ପଡିଯାଇଛି । ସେମାନେ ବଡ଼ଘର - ତା' ସାଙ୍ଗରେ ଏତେ ସମ୍ପର୍କ କ'ଣ । ଯେତେବେଳେ ଖବରଟା ଦାଣ୍ଡରେ ପଡି ହାଟରେ ଗଡିବ ସେତେବେଳେ ମୁହୂର୍ତ୍ତେ ମଧ ଲାଗିବନି ଘନଶ୍ୟାମ ବାବୁଙ୍କୁ ଶିବକୁ ତଳିତଲାନ୍ତ କରିବାକୁ ।

ସନ୍ଧ୍ୟାବେଳେ ଶିବ ଘରକୁ ଫେରିଲା । ରେବତି ରୋଷେଇ ଘରେ ପରିବା କାଟୁଥିଲା । ହଠାତ୍ ଜୋର୍‌ରେ ବୋଉଲୋ କହି ଚିତ୍କାର କରି ଚଳେ ପଡିଗଲା । ପାହାର ପରେ ପାହାର ଦେଇଚାଲିଥିଲା ଶିବଚରଣ । ତୋର ପୁଣି ଏତେ ସାହସ... । ଗାଁର ମୁଖିଆଙ୍କ ସେଇ ଯେଉଁ ଲଫଙ୍ଗା ପୁଅ ତା' ସାଙ୍ଗରେ ଭାବ କରୁଛୁ - ମରୁନୁ କାହିଁକି ଲୋ ପୋଡାମୁହିଁ । ପଛେ ପଛେ ଆହୁରି ଦୁଇପଦ ଯୋଡିଦେଲା ରୁକ୍ମିଣୀ - ଧରିଥିବା ଝାଡୁକୁ ଦୁଲ୍‌କିନା କଚିଦେଇ ରୋଷେଇ ଘର ଚାରିପଟେ ବୁଲିଆସିଲା... ଏଥର ଦେଖ ଗୁଣମଣିକୁ ଦେଖ... ମୁଁ ସିନା ସାବତ ମାଆ ବୋଲି ପରତେ ଯାଉନଥିଲ, ଏବେ ତ ନିଜେ ଶୁଣିଆସିଲ... ଆଉ ମୁଁ ଏ ଗାଁରେ ମୁହଁ ଦେଖାଇ ଚଳିପାରିବି ଟି ? ତମେ ଜଲ୍‌ଦି ଇଆର ଫଇସଲା କର ନହେଲେ ମୁଁ ମୋର ବାପଘରକୁ ସିଧା ଟିକଟ କାଟିଲି...ହାଁ... ।

ଶିବଚରଣଙ୍କ ହାତ ନରମିଗଲା । ତୁଳସୀ ଗଳାପରଠୁ ସିଏ ଝିଅଦେହରେ ହାତଦେଇନଥିଲେ । ରାଗରେ ବାଡି ଖଣ୍ଡିକ ଫୋପାଡିଦେଇ ବାରିଆଡକୁ ଚାଲିଗଲା ଶିବଚରଣ । ପଛେ ପଛେ ରୁକ୍ମିଣୀ ।

ସେଦିନ ରାତିରେ କେହି ଖାଇଲେ ନାହିଁ । କାନ୍ଦି କାନ୍ଦି ବେହୋସ ହୋଇ ଯାଉଥାଏ ରେବତି । ବାପା ବାପା ବୋଲି କାନ୍ଦ ଲହରୀରୁ ଶୁଭୁଥାଏ । ଯେତେ ଡାକିଲେ

ମଧ୍ୟ ଚାରି ଘରେ ମୁହଁମାଡି ପଡିଥାଏ । ରାତି ଧୀରେ ଧୀରେ ଗାଢ଼ ହେବାକୁ ଲାଗିଲା । ଅନ୍ଧାର ଭିତରେ ତା'ର ମନେ ହେଲା ସତେ ଯେମିତି କିଏ ତା'ର ନାଁ ଧରି ଡାକୁଛି । ହଠାତ୍ ଉଠି ଦଉଡି ଯାଇ କବାଟ ପାଖରେ ଠିଆ ହୋଇଗଲା । କାହିଁ କେହି ନାହିଁ ତ ? ଆଜି ତା'ର ବିଶ୍ୱନାଥ ସାଙ୍ଗରେ ଦେଖା ହୋଇଥିଲା... କଥାବାର୍ତ୍ତା ହେଉ ହେଉ ଡେରି ହୋଇଯାଇଥିଲା... ସେଇ ବାଟ ଦେଇ ଗୋପିଆ ଯାଉଥିଲା... ଗୋପି, ମୁରବୀ ଘନ ମଉସାଙ୍କର ଖଳାରେ କାମ କରୁଥିବା ହଳିଆ ଟୋକା - ସେଇ ବୋଧେ ଆସି ଶିବଚରଣଙ୍କ କାନରେ ଏକଥା ପକେଇ ଦେଇଛି । ନହେଲେ ବାପା କେମିତି ଜାଣିଥାନ୍ତେ ଯେ... ବାପା ତ ଆଜି ନଥିଲେ... ସକାଳୁ କୁଆଡେ ଯାଇଥିଲେ । କହିଥିଲେ ଫେରୁ ଫେରୁ ସଞ୍ଜ ହେବ ବୋଲି । ଏବେ ବାପା ଆଉ ତା' ସାଙ୍ଗରେ ଭଲରେ କଥା ହେଉନାହାଁନ୍ତି... ବେଶୀ ସମୟ କଟାଉଛନ୍ତି ସାନ ମା' ସାଙ୍ଗରେ । ସାନ ମା' ତାଙ୍କୁ କି ଗଦ ଶୁଂଘାଇଛି କେଜାଣି ସେ ଖାଲି ତାରି କଥାରେ ବସଉଠୁ ହେଉଛନ୍ତି - ଏତେବେଳେ ତା'ର ନିଜର ମାଆ କଥା ମନେ ପଡିଲା... ସାମନାରେ ଦେଖିଲା ଫଟଟା ଝୁଲୁଛି ତା'ର ବାପା ମାଙ୍କର - ସେ ଫଟଟିକୁ ପାଖକୁ ଆଣିଲା... ଛାତି ଉପରେ ଥୋଇଲା । ବୋଉ ବୋଉ ବୋଲି ଡାକଛାଡିଲା । ଆଃ' ସତରେ ବୋଉ, କି ନରମ ତୋର କୋଳ - ସତରେ ତୋ କାନି ତଳେ ଆଶ୍ରା ନେବାକୁ ମୋର ମନ ଡାକୁଛି - ଆଜି ତୁ ଥିଲେ ବାପାଙ୍କର କ'ଣ ହାତ ଉଠିଥାନ୍ତା ମୋ ଉପରକୁ ନା ମୋତେ ଇମିକୁ ଯିବାକୁ ପଡିଥାନ୍ତା । ସଂସାରର ସବୁ ଦୁଃଖକଷ୍ଟକୁ ନିଜ ମୁଣ୍ଡ ଉପରକୁ ନେଇ ଆମକୁ ତୁ ଠିଆ କରାଇଥାନ୍ତୁ - ଏ ସଂସାରରେ ତୋର ଆଶୀର୍ବାଦରେ ମୁଁ ପାଠପଢ଼ି ମଣିଷ ହୋଇଥାନ୍ତି... ଏ ବୟସରେ ମୁଁ କ'ଣ ବିଲକୁ ଯାଇଥାନ୍ତି ବୋଉ... ଆଜି କାହିଁକି ତୁ ମୋର ବହୁତ ମନେପଡୁଛୁ... ବାପାଙ୍କ ମନର ଅବସ୍ଥା ଭଲ ନାହିଁ... ହେଲେ ସେ କଣ ବା କରିବେ - ବୋଉ ତୁ କେଉଁଠି ଅଛୁ - ଆସୁନୁ କାହିଁକି, ଥରେ ମୋ ପାଖକୁ ଆ - ମୋତେ ଟିକିଏ ତୋ କୋଳରେ ଆଶ୍ରୟ ଦେ-ମୁଁ ନିରାଶ୍ରୟା ପାଲଟିଯାଇଛି ।

ପାଖ ଘରୁ ଆଉ ସ୍ୱର ଶବ୍ଦ ଶୁଭୁନାହିଁ । ବାପା ସାନ ମା ବୋଧେ ଶୋଇଗଲେଣି । ହଳିଆମାନେ ସନ୍ଧ୍ୟା ହେଲେ ଘୁଙ୍କୁଡି ମାରିବେ - ଦିନସାରା ଖଟିଛନ୍ତି- ବିଚରାମାନେ ଶୁଅନ୍ତୁ । ରାତି ବଢ଼ିବାରେ ଲାଗିଛି । ହଠାତ୍ କାହିଁକି ବିଶ୍ୱନାଥ କଥା ମନେପଡିଲା... ସିଏ କ'ଣ ଭାବୁଥିବ... କ'ଣ ସେ କରୁଥିବ । ରେବତି ବୋଉ ବୋଉ ଡାକି ବାହାରକୁ ଆସିଲା.. ସେତେବେଳକୁ ଶୂନଶାନ୍ ରାତି-ଆକାଶରେ ମେଘଟାଏ- ଯେକୌଣସି ମୁହୂର୍ତ୍ତରେ ଗର୍ଜିଯାଇପାରେ- ଅଳ୍ପ ଦୂରରେ ନଈଟାଏ ବହିଯାଉଛି...କିଛି

ସମୟ ପରେ ଗାଁବାଲାଏ ଉଠିପଡି ନଈ ଆଡକୁ ଧାଇଁବେ... ଏଇ ହେଉଛି ପ୍ରକୃଷ୍ଟ ସମୟ । ରେବତିର ଗତି ବଢ଼ିଗଲା... ନଈରେ ଅକାତ ପାଣି - ବୋଉ ବୋଉ ଚିତ୍କାର କରି ବଢନ୍ତା ନଈ ଭିତରକୁ ଲମ୍ଫ ପ୍ରଦାନ କଲା... ହଠାତ୍ ଜଣେ ଯେମିତି ତାକୁ ଶୂନ୍ୟରୁ ଟେକିନେଲା ପରି ତା'ର ମନେ ହେଲା । ମୁହୂର୍ତ୍ତକ ମଧ୍ୟରେ ସେ ଅନୁଭବ କଲା କାହାର ଗଭୀର ଆଶ୍ଲେଷ । ଆରେ ଏ ଯେ ବିଶ୍ୱନାଥ । 'ମୁଁ ଜାଣିଥିଲି ଏ ସବୁ ସେଇ ଗୋପିନାଥର କାଣ୍ଡ... ମୁଁ ମଧ ଭାବିଥିଲି ତୋ ଉପରେ ଯାହାସବୁ ଅତ୍ୟାଚାର ଘଟିଥିବ... ମୁଁ ମଧ ରାତିରେ ଶୋଇପାରିନଥିଲି... ବର୍ତ୍ତମାନଠୁ ମୋ ଘର ହେଲା ତୋର... ଯଲ୍‌ଦି ଚାଲ୍... ସକାଳ ହୋଇଯିବ - ପାହାନ୍ତିଆ ପହରକୁ ଆମେ ଆମ ଘରେ ଥିବା-ବାପା ମୋର ସବୁ ଜାଣିଛନ୍ତି... ।' ରେବତି ଚାଲୁଥିଲା ବିଶ୍ୱନାଥର ହାତ ଧରି... ସତେ ଯେମିତି ତା'ର ହଜିଲା ଜୀବନକୁ ସିଏ ଖୋଜି ପାଇଛି ।

❖

# ବନ୍ଧ୍ୟାନାରୀ

ଦୀପଙ୍କର ବାବୁ ସହରର ଜଣେ ଜ୍ଞାନୀ ବ୍ୟକ୍ତି ରୂପେ ଜଣାଶୁଣା । ଏପରିକି ଲୋକମାନେ ତାଙ୍କ ସହିତ ସହରର ସମସ୍ୟା ନେଇ ବିଭିନ୍ନ ସମୟରେ ଆଳାପ ଆଲୋଚନା କରୁଥିଲେ । କିଏ କିଏ ତାଙ୍କୁ ପଣ୍ଡିତ ଦୀପଙ୍କର ବୋଲି ଆଖ୍ୟା ଦେଉଥିଲେ । ମଝିରେ ମଝିରେ ସେ ଅବଶ୍ୟ ଜ୍ୟୋତିଷ ଚର୍ଚ୍ଚା କରି ପ୍ରାଣୀର ଭଲ ମନ୍ଦ ବିଷୟରେ ଭବିଷ୍ୟବାଣୀ ଶୁଣାଉଥିଲେ । ଯାହାର ଇଚ୍ଛା ପୂରଣ ହେଉଥିଲା ସେ ଆସି କିଛି କିଛି ଉପହାର ପ୍ରଦାନ କରୁଥିଲା । ଏ ସବୁ ସତ୍ତ୍ୱେ ଦୀପଙ୍କରଙ୍କର ନିଜର ମଧ୍ୟ କିଛି ସମସ୍ୟା ଥିଲା, ସେଥିପାଇଁ ସେ ଘରେ ବେଳେ ବେଳେ ଯଜ୍ଞର ଆୟୋଜନ କରୁଥିଲେ । ଗ୍ରହ ଶାନ୍ତି ପୂଜା କରୁଥିଲେ, କିନ୍ତୁ ତଥାପି ତାଙ୍କର ଅଶାନ୍ତି ଦୂର ହେଉନଥିଲା । ତାଙ୍କର ସ୍ତ୍ରୀ ପ୍ରତିମା ଦେବୀ ବେଶ୍ ସୁନ୍ଦରୀ ରୂପବତୀ ଗୁଣବତୀ ଥିଲେ । ହେଲେ ଭଗବାନ ତାଙ୍କ କୋଳକୁ ସନ୍ତାନଟିଏ ଦେଇନଥିଲେ । ଦୀପଙ୍କର ଭାବୁଥିଲେ କଣ ହେବ ଏ ଧନସମ୍ପତ୍ତି । କଣ ହେବ ଏ ଘର ଦ୍ୱାର, ସୁନା ଅଳଙ୍କାର, ଯଦି କୁଳରକ୍ଷା ପାଇଁ ସନ୍ତାନଟିଏ ଏ ପୃଥିବୀକୁ ନଆସିବ । ଏଥିପାଇଁ ବେଳେ ବେଳେ ନିଜ ସ୍ତ୍ରୀକୁ ଭର୍ତ୍ସନା କରୁଥିଲେ, ରାଗ ମୁହୂର୍ତ୍ତରେ କହୁଥିଲେ ତୁ'ଟା ଅସମୟରେ ଏ ଘରକୁ ଆସିଲୁ, ଯେତେସବୁ ଅମଙ୍ଗଳ ସବୁରି ପାଇଁ ତୁ ହିଁ ଦାୟୀ । ପ୍ରତିମା ଦୁଃଖ ବୁଝେ, ମାତ୍ର ସ୍ୱାମୀକୁ କିଛି ଆକଟି କହିପାରେ ନାହିଁ । କାରଣ ସେ ମଧ୍ୟ ଏ ଅଶାନ୍ତି ପାଇଁ ଦାୟୀ । ହେଲେ ଏ ଭୁଲ୍‌ର ପ୍ରତିକାର କ'ଣ ? ଦୀପଙ୍କର ଭାବୁଥିଲେ ସ୍ତ୍ରୀର ପରମ ଏବଂ ପ୍ରଥମ କର୍ତ୍ତବ୍ୟ ହେଲା ସନ୍ତାନ ପ୍ରସବ, ସେମାନଙ୍କର ଲାଳନପାଳନ ଏବଂ ପରିବାରର ଦାୟିତ୍ୱ । ଘରେ ବିରାଡ଼ି ଛୁଆଟିଏ ମଧ୍ୟ ନାହିଁ, କିପରି କଟିବ ସେମାନଙ୍କର ସମୟ । ଦୀପଙ୍କରଙ୍କ ପରେ କିଏ ହେବ ଏ ଘରର ଉତ୍ତରାଧିକାରୀ, ଏହି ଚିନ୍ତାରେ ସେ ଅଧିକାଂଶ ସମୟ ନିମଗ୍ନ ରହୁଥିଲେ ।

ପଡ଼ୋଶୀମାନେ ମଧ୍ୟ ଘରକୁ ବୁଲି ଆସିଲେ, ପ୍ରତିମାକୁ ନାନା ପ୍ରକାର ଅକଥ୍ୟ ଭାଷାର ଶୀକାର ହେବାକୁ ପଡୁଥିଲା । ତଥାପି ସେ ସବୁକୁ ନିଜ ଦେହକୁ ନନେଇ ସେ ସବୁ ଭାଗ୍ୟର ଦୋଷ ବୋଲି ଭାବୁଥିଲା । ଦିନସାରା ସେ ଏକୁଟିଆ ରହେ । ଦେହ ମନ ବିରକ୍ତିକର ହୋଇଯାଏ । ବେଳେବେଳେ ଭାବେ ଟିକେ ବାହାରକୁ ଯାଇ ବୁଲି ଆସିଲେ କେମିତି ହୁଅନ୍ତା ।

କୁନ୍ତଳା ତାର ମାମୁଁ ଝିଅ ଭଉଣୀ । ସେ ହିଁ ତାର ଏକମାତ୍ର ସାହା ଭରସା ।

ସେ ହିଁ ତାକୁ ଆଶା ଦିଏ । ବେଳେବେଳେ ପ୍ରତିମା ତା ଘରକୁ ବୁଲିବାକୁ ଯାଏ । କିଛି ସମୟ କଟାଏ ତା ସଙ୍ଗେ ଗପ ସପ କରି - ସନ୍ଧ୍ୟା ହେଲେ ଫେରିଆସେ । ଏଇ କିଛିଦିନ ହେଲା କୁନ୍ତଳାର ମାମୁଁ ପୁଅ ଭାଇ ସନ୍ତୋଷ ତାଙ୍କ ଘରକୁ ଯିବା ଆସିବା କରୁଛି । ସନ୍ତୋଷ ବେଶ୍ ମେଳାପୀ ପିଲା - କେଉଁ ଗୋଟାଏ ଅଫିସ୍‌ରେ ଚାକିରୀ କରେ । ଏ ପର୍ଯ୍ୟନ୍ତ ବାହାହୋଇନି । ଏଣୁ ସନ୍ଧ୍ୟା ସମୟରେ ସେ ପ୍ରାୟ ଚାଲିଆସେ କୁନ୍ତଳାର ଘରକୁ । କୁନ୍ତଳାର ସ୍ୱାମୀ ଫେରନ୍ତି ଡେରିରେ । ଏହି ଅବକାଶରେ ସନ୍ତୋଷର ପରିଚୟ ହୁଏ ପ୍ରତିମା ସହିତ । ପ୍ରତିମାର ଘରେ ତ ସବୁଦିନ ଅଶାନ୍ତି । ଏଣୁ ସନ୍ତୋଷ ସଙ୍ଗେ ଗପିଲେ ତାର ମନ ହାଲ୍‌କା ହୋଇଯାଏ ।

ଦିନେ ସଂଜରେ କୁନ୍ତଳା ରୋଷେଇ ଘରେ କଣ ଗୋଟାଏ କାମ କରୁଥାଏ - ବାହାର ଘରେ ଗପୁଥାନ୍ତି ସନ୍ତୋଷ ଓ ପ୍ରତିମା । ପ୍ରତିମା ଆଉ ସନ୍ତୋଷ ଆଗରେ ମୁଣ୍ଡରେ ଓଢ଼ଣା ଦିଏ ନାହିଁ । ବେଶ୍ ହସଖୁସିରେ ସେମାନେ ଗପରେ ମଜ୍ଜିଯାଇଥିବାବେଳେ ବାହାରୁ ପଶିଆସିଲା ପ୍ରତିମାର ଚାକରାଣୀ ଲିଲି... । ଏ ତ ଦିଦି ତମେ ଏଇଠି ଏତେବେଳଯାଏ ଅଛ ମୁଁ ତେଣେ ଖୋଜିବାରେ ଲାଗିଛି । ଜଲ୍‌ଦି ଆସ ବାବୁ ଆସିଲେଣି । ସାଧାରଣ ଭାବେ ଦୀପଙ୍କର ରାତି ଦଶଟା ଆଗରୁ ଫେରନ୍ତି ନାହିଁ । ପ୍ରତିମା କହିଲା ହଉ ତୁ ଯାଆ ମୁଁ ଯାଉଛି । ଲିଲି ଥରେ ସନ୍ତୋଷ ଆଡ଼କୁ ଆଉ ଥରେ ପ୍ରତିମା ଆଡ଼କୁ ସନ୍ଦେହପୂର୍ଣ୍ଣ ଆଖିରେ ଚାହିଁଦେଇ ତତ୍‌କ୍ଷଣାତ୍ ସେ ଘରୁ ନିଷ୍କ୍ରାନ୍ତ ହୋଇଗଲା ।

ଘରେ ପଶୁ ପଶୁ ଦୀପଙ୍କରଙ୍କର ଚିତ୍କାର ଶୁଣାଗଲା - 'କଳଙ୍କିନୀ, ବେଶ୍ୟା, ବାହାର ବାହାର ମୋ ଘରୁ ।' ପ୍ରତିମା ନିଜ ଶୋଇବା ଘରର କବାଟ ବନ୍ଦ କରି ଶୋଇପଡ଼ିଲା, ତାର ଅଶ୍ରୁହୀନ ଚକ୍ଷୁ ମଧ୍ୟାହ୍ନର ମରୁଭୂମି ପରି ଜଳୁଥିଲା । ଯେତେବେଳେ ରାତି ଘନୀଭୂତ ହେଲା ତାର କ୍ରନ୍ଦନର ସ୍ୱର ବଢ଼ିବାକୁ ଆରମ୍ଭ କଲା ଏବଂ ରାତ୍ରୀର ବିଳମ୍ବିତ ପ୍ରହରରେ ସେ ସ୍ୱାମୀ ଗୃହ ଛାଡ଼ିଗଲା । ସେ ପର୍ଯ୍ୟନ୍ତ ସେ ନିଜେ ମଧ ଜାଣିନଥିଲା ଯେ ଦୀପଙ୍କରଙ୍କର ସନ୍ତାନ ତା ଗର୍ଭରେ ଆଶ୍ରୟ ନେଇଛି ।

ସମୟ କାହାପାଇଁ ଅପେକ୍ଷା କରେ ନାହିଁ । ମଣିଷ ସମୟର ଦାସ । ପ୍ରତିମା ଘର ଛାଡ଼ିଗଲା ପରଠାରୁ ଦୀପଙ୍କରଙ୍କର ମନ ଭଲ ରହୁନାହିଁ । ତାଙ୍କର ବ୍ୟବସାୟ ବାଣିଜ୍ୟରେ ଯଦିଓ ଉନ୍ନତି ପରିଲକ୍ଷିତ ହୋଇଛି ହେଲେ ମାନସିକ ସ୍ତରରେ ଦୁଶ୍ଚିନ୍ତା ଲାଗି ରହିଛି । ସେ ସବୁବେଳେ ସେହି ଗୋଟିଏ ଚିନ୍ତାରେ ବୁଡ଼ି ରହୁଛନ୍ତି । ତାଙ୍କର ଏ ଅଚଳାଚଳ ସମ୍ପତ୍ତିକୁ ତାଙ୍କ ମୃତ୍ୟୁ ପରେ କିଏ ଭୋଗ କରିବ ? ବେଳେବେଳେ ପ୍ରତିମା କଥା ମନେ ପଡ଼ିଯାଏ । ବିଚାରୀର ଦୋଷ ବା କଣ । ହଠାତ୍ ରୋଷର ଶିକାର ହୋଇ

ତାଙ୍କୁ ଘରୁ ବିଦା କରିଦେଲେ । ପାଖ ପଡ଼ୋଶୀମାନଙ୍କ କଥାରେ ସେ ଭାସିଗଲେ - ସେମାନେ ତାଙ୍କୁ 'ବନ୍ଧ୍ୟାନାରୀ' ବୋଲି ବାରମ୍ବାର ତିରସ୍କାର କଲେ । ଶେଷରେ ସେ ନିଷତି କଲେ, ଏସବୁରୁ ନିସ୍ତାର ପାଇବାକୁ ହେଲେ ତାଙ୍କୁ ପୁନରାୟ ବିବାହ କରିବାକୁ ହେବ । ତାହେଲେ ହୁଏତ ତାଙ୍କର ମନୋବାଞ୍ଛା ପୂରଣ ହୋଇପାରିବ ।

ସୁନୟନା ଯେବେଠୁ ତାଙ୍କ ଘରକୁ ଆସିଲା, ସେବେଠୁ ତାଙ୍କ ଘରର ଶାନ୍ତି କୁଆଡ଼େ ଉଭେଇଗଲା । ସୁନୟନା ତାଙ୍କ ଘରର କିଛି ଲୋକଙ୍କୁ ଆଣି ଦୀପଙ୍କରଙ୍କ ଘରେ ରଖିଲା । ଫଳରେ ଦୀପଙ୍କରଙ୍କର ଅଶାନ୍ତି ବଢ଼ିଲା । ପୁଣି ସେମାନେ ଦାବୀ କଲେ ସମ୍ପତ୍ତିର କିଛି ଅଂଶ । ଦିନକୁ ଦିନ କଳହ ବଢ଼ି ଚାଲିଲା । ସୁନୟନା ଗର୍ଭରୁ ମଧ୍ୟ ସନ୍ତାନ ପ୍ରାପ୍ତିର କୌଣସି ସୂଚନା ମିଳିଲା ନାହିଁ । ତେଣୁ ସବୁ ଦିଗରୁ ତାଙ୍କୁ ଅନ୍ଧକାର ଦେଖାଗଲା । ତାଙ୍କର ଏତେ ପୂଜାପାଠ ଧର୍ମକାର୍ଯ୍ୟର କିଛି ମୂଲ୍ୟ ରହିଲା ନାହିଁ । ତାଙ୍କ ବିରାଟ ପ୍ରାସାଦର ଉତ୍ତରାଧିକାରୀ ରୂପେ କାହାକୁ ଦେଖିବାକୁ ମିଳିଲା ନାହିଁ । ଯା ଭିତରେ ବେଶ୍ କିଛି ବର୍ଷ ବିତିଗଲା । ଦୀପଙ୍କର ହତୋତ୍ସାହ ହୋଇ ସୁନୟନାଙ୍କୁ ମଧ୍ୟ ଘରୁ ବିତାଡ଼ିତ କଲେ । ଭାବିଲେ ଆଉ ଗୋଟିଏ ପତ୍ନୀ ଗ୍ରହଣ କରିବେ, କିନ୍ତୁ ଦୁଇଜଣଙ୍କୁ ବାହାହୋଇ ସାରି ତୃତୀୟ ଜଣକୁ ବାହାହେଲେ ଯେ ଅବସ୍ଥା ସୁଧୁରିଯିବ ତାର କିଛି ମାନେ ହୁଏନା । ଏଣୁ ଏ ଭଳିଆ ଏକ ନିଷତିରୁ ସେ ଦୂରେଇ ରହିଲେ ।

ପୁଣି ସେ ନିର୍ଜନ ଘରେ ବସବାସ କରିବାକୁ ଲାଗିଲେ । ପ୍ରତିମାକୁ ସେ ଭାବିଲେ ପୁନରାୟ ଘରକୁ ଆଣିବେ - କାରଣ ସେ ହିଁ ତାଙ୍କର ଉପଯୁକ୍ତ ସେବା କରୁଥିଲା । କିନ୍ତୁ ପୁଣି ପରେ ସେ ନିଜକୁ ଶକ୍ତ କଲେ । ତାଙ୍କୁ ସନ୍ତାନ ଦରକାର - ସନ୍ତାନ । କେହି କେହି ଉପଦେଶ ଦେଲେ ପୋଷ୍ୟ ସନ୍ତାନ ଗ୍ରହଣ କରିବାକୁ, କିନ୍ତୁ ସେଥିରେ ସେ ରାଜି ହେଲେ ନାହିଁ ।

ଦୀପଙ୍କର ଦିନକୁ ଦିନ ନୈରାଶ୍ୟରେ ଭାଙ୍ଗିପଡ଼ିଲେ । ଅବଶେଷରେ ପଣ୍ଡିତ ମାନଙ୍କର ପରାମର୍ଶରେ ଏକ ବ୍ୟୟସାଧ୍ୟ ଯଜ୍ଞର ଆୟୋଜନ କଲେ । ତାହାଦ୍ୱାରା ପ୍ରାୟ ଶହେ ଜଣ ବ୍ରାହ୍ମଣଙ୍କ ପାଇଁ ଖାଦ୍ୟପେୟର ଆୟୋଜନ କରାଗଲା । ସେମାନେ ଆସି ଦୀପଙ୍କରଙ୍କୁ ଆଶୀର୍ବାଦ କରି ଯାଇଥିଲେ । ଦୀପଙ୍କର ଭାବୁଥିଲେ ବର୍ତ୍ତମାନ ଏମାନେ ଖାଉଛନ୍ତି, ପରବର୍ତ୍ତୀ ପର୍ଯ୍ୟାୟରେ ତାଙ୍କ ସନ୍ତାନ ଏସବୁ ଉପଭୋଗ କରିବ । ଏଭଳିଆ ଚିନ୍ତା କରି ସେ ଆନନ୍ଦରେ ନିଦ୍ରା ଯାଇଥିଲେ ।

ଦିନେ ସକାଳୁ ଦୀପଙ୍କର ଲକ୍ଷ୍ୟ କଲେ... ବାହାର ଗେଟ ପାଖରେ କିଏ ଜଣେ ଆତୁର କ୍ରନ୍ଦନ କରୁଛି... । ସେ ଲକ୍ଷ୍ୟ କଲେ ସ୍ତ୍ରୀ ଲୋକଟିଏ କିଏ... କାହିଁକି କାନ୍ଦୁଛି...

ଆଉ ତା ସାଙ୍ଗରେ ଅଛି ଜୀର୍ଣ୍ଣଦେହ ବାଳକଟିଏ । ଦୀପଙ୍କରଙ୍କର ମନ ଚହଲି ଗଲା । ଏତେଦିନ ଧରି ଖାଲି ସେ ବ୍ରାହ୍ମଣମାନଙ୍କ ସେବା କରି ଆସିଛନ୍ତି । ଆଜି ଏ ଶୀର୍ଣ୍ଣକାୟା ସ୍ତ୍ରୀ ଲୋକଟି ସାହାଯ୍ୟ ଭିକ୍ଷା କରୁଛି । ସେ ତତ୍‌କ୍ଷଣାତ୍ ଭିତରକୁ ଖବର ପଠାଇଲେ । ପୂଜାରୀକୁ କହିଲେ, 'ସ୍ତ୍ରୀ ଲୋକଟିକୁ ଏବଂ ତା ପୁଅକୁ ପେଟ ଭର୍ତ୍ତି ଖାଦ୍ୟ ତୁରନ୍ତ ପ୍ରଦାନ କର ।' ପୂଜାରୀ କହିଲା ' ହଜୁର୍ ଆମେ ସମସ୍ତେ ତାକୁ ବହୁପ୍ରକାର ଖାଦ୍ୟ ବ୍ୟଞ୍ଜନରେ ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଛୁ କିନ୍ତୁ ସେ କେବଳ କାନ୍ଦୁଛି ଏବଂ କିଛି କହୁନାହିଁ ।'

'ଦୀପଙ୍କର କହିଲେ ସେ କହୁଛି କ'ଣ ?'

ପୂଜାରୀ କହିଲେ ସେ କିଛି କହୁନାହିଁ - ପଚାରିଲେ ମଧ ସେ ବେଶି ବେଶି କାନ୍ଦୁଛି ।

ଦୀପଙ୍କର ବସିବା ସ୍ଥାନରୁ ଉଠିଗଲେ...

ଗେଟ୍ ଖୋଲିଲାକ୍ଷଣି ସେ ସ୍ତ୍ରୀ ଲୋକଟି ତାଙ୍କ ପାଦ ଧରି ବାରମ୍ବାର କ୍ରନ୍ଦନ କରିବାକୁ ଲାଗିଲା....

ଆରେ ଏ ଯେ ପ୍ରତିମା.... ।

# ବଦଳି

ସହର ସହର, ମଫସଲ ମଫସଲ ।

ସହରର ଲୋକେ ମଫସଲରେ ଚଳିବା ଯେମିତି କଷ୍ଟକର, ମଫସଲର ଲୋକେ ସହରର ହାୱାରେ ଚଳିବା ସେମିତି କଷ୍ଟକର । ସେମାନଙ୍କୁ ଲାଗେ ଏଠି ଯେମିତି ପବନ ନାହିଁ, ଗାଁ ଗଡ଼ିଆ ନାହିଁ, ଜଉମୀନ ଖେଳୁନାହାନ୍ତି, ପୋଖରୀ ନାହିଁ କି ପଦ୍ମଫୁଲ ନାହିଁ । ନାଲି କାଦୁଅ ରାସ୍ତା ମଧ୍ୟ ନାହିଁ କି କିଆ ବୁଦା ନାହିଁ । ସବୁ ଯେମିତି ସହରି ସହରି ବାସେ ସେମାନଙ୍କୁ । ଏଠି କଳପାଣିରେ ଗାଧୋଇଲେ କୁଆଡ଼େ ତାଙ୍କୁ ରୋଗ ବଇରାଗ ହୁଏ । ଏଠି ବରଗଛର ଦୋଳି ନାହିଁ କି ବଣ କଣ୍ଢେଇ କୋଳିର ଢଙ୍ଗଳ ନାହିଁ ।

ମଦନମୋହନଙ୍କର ଜନ୍ମ ହୋଇଛି ସହରରେ । ପାଠ ପଢ଼ିଛନ୍ତି ସହରରେ । ଚାକିରି ମଧ୍ୟ କରିଛନ୍ତି ସହରରେ । କିନ୍ତୁ ସରକାରଙ୍କ ବିଚିତ୍ର ବଦଳି ନୀତି । ସମସ୍ତେ ସହରରେ ରହିବେ ତ ମଫସଲକୁ ଯିବ କିଏ । ଗାଁର ମଧ୍ୟ ଉନ୍ନତି ହେବ ନାହିଁ । ମଦନମୋହନଙ୍କ ଆଗକୁ ପଛକୁ କେହି ନାହିଁ । ଏଣୁ ବାଧହୋଇ ସେ ଗାଁ ସ୍କୁଲରେ ହେଡ଼ମାଷ୍ଟର ହୋଇ ଜଏନ କଲେ । ଗାଁରେ ତ ଘର ଦ୍ୱାର ନଥାଏ, କେଉଁ ଗୋଟାଏ ପୁରୁଣା ଚାଳ ଘରେ ସ୍କୁଲଘର ଚାଲୁଥାଏ । କାମ ହେଲା ଦଶଟାରୁ ଚାରିଟା ପିଲାଙ୍କୁ ପାଠପଢ଼ାଇବା ଆଉ ଚାରିଟା ପରେ ସ୍କୁଲ କଡ଼ରେ ଥିବା ଭଡ଼ା ଘରକୁ ଚାଲିଯିବା । ଏଠି ତାଙ୍କୁ କେହି ଚିହ୍ନନ୍ତି ନାହିଁ କି ଜାଣନ୍ତି ନାହିଁ । ତାଙ୍କ ଛଡ଼ା ଆଉ ଦୁଇଜଣ ଶିକ୍ଷକ । ସେମାନେ ନିଜ ନିଜ ଗାଁରୁ ଯିବା ଆସିବା କରନ୍ତି । ଏଣୁ ସନ୍ଧ୍ୟାବେଳେ ସେ ଲଣ୍ଠନ ଜାଳି ନିଜ ଘର ଭିତରକୁ ପଶିଯାଆନ୍ତି । ବେଳେବେଳେ କଣ ସବୁ ଗୁଣୁଗୁଣୁ ହୋଇ ଗାଆନ୍ତି ଆଉ ଲେଖନ୍ତି ସେ କଥା କିଏ କହିବ । ଏଠି ରାତିହେଲେ ମୂଷାମାନଙ୍କ ଶବ୍ଦରେ ତାଙ୍କ ନିଦ ବାରମ୍ବାର ଭାଙ୍ଗିଯାଏ । ରାତିରେ ବାରମ୍ବାର ଉଠିବା ହେତୁ ତାଙ୍କ ଦେହ ଭଲ ରହେନାହିଁ, କିନ୍ତୁ ତଥାପି ମନବଳ ଦୃଢ଼ ଥାଏ ।

ଏଠି ଗାଁରେ ସାହାଯ୍ୟ କରିବାକୁ କେହି ନାହିଁ । କୌଣସି ମତେ ହାଟ ବାଟ କରି ନିଜେ ରୋଷେଇ କରି ଖାଇବାକୁ ହୁଏ । ରାତିରେ ଯାହା କରନ୍ତି ସକାଳକୁ ତାହା କାମରେ ଲାଗେ । କୋଠରୀ ବୋଇଲେ ଗୋଟିଏ । ତା ସାମନା ପଟକୁ ବାରଣ୍ଡାଟିଏ ଏବଂ ପାଖକୁ ଲାଗିଛି ଆଉ ଗୋଟିଏ ଛୋଟିଆ ଘର ଗାଧୁଆ ପାଧୁଆ ନିତ୍ୟକର୍ମ ସାରିବା ଲାଗି ।

କିଛିଦିନ ଭଲାରୁ ଗରିବକୁ ଦଇବ ସାହା ଭଳି ତାଙ୍କୁ ଗୋଟାଏ କୂଳ କିନାରା

ମିଳିଗଲା । ତାଙ୍କୁ ମିଳିଗଲା ମିନି ବୋଲି ଝିଅଟିଏ । ଏକଦମ ଛୋଟିଆ ଅନାଥ ବାଳିକା । ତାକୁ ସିଏ ଉଦ୍ଧାର କରି ଆଣିଥିଲେ ଜଣଙ୍କ ଘରୁ । ସେଇହିଁ ତାଙ୍କର ହାତବାରିଶି ସାଜିଛି । ଗୋଡ଼ହାତ ମୋଡ଼ିଦିଏ, ତେଲ ଲଗାଇଦିଏ, ବାସନ ମାଜିଦିଏ । ଛୋଟ ଛୋଟିଆ କାମ କରିଦିଏ । ଏମିତିଆ ଗାଁରେ ଆଉ ବା କଣ ମିଳନ୍ତା କି ? ବେଳେବେଳେ ମଦନମୋହନ ତାରି ଆଗରେ ବସି ଗୀତ ବୋଲନ୍ତି । ମିନି ବୋକୀଟିଏ ପରି ଗୁରୁଜୀଙ୍କ ମୁହଁକୁ ଅନାଇ ଥାଏ ।

ଦିନେ ଦିନେ ସନ୍ଧ୍ୟାବେଳେ ସ୍କୁଲ ପରେ ମଦନମୋହନ ତାକୁ ଅତୀତ କଥା ପଚାରନ୍ତି । ମିନି କୁହେ କିଛି କିଛି ଝାପସା ମନେ ଅଛି । ବାପା ମାଆଙ୍କ ମଧ୍ୟରେ ପ୍ରାୟତଃ ଝଗଡ଼ା ଲାଗେ । ତାର ଗୋଟେ ଛୋଟ ଭାଇ ମଧ ଥିଲା । ଦିନେ ବାପାମାଆ ଉଭୟେ ବିଷ ଖାଇଦେଲେ । ଗାଁ ଲୋକେ ତାଙ୍କୁ ପୋଡ଼ିଦେଲେ । ସେ ରାତିରେ ସେ ଘରୁ ବାହାରି ଆସିଥିଲା । ନିଜ ଗାଁ ଛାଡ଼ି ଚାଲିଆସିଥିଲା । ଆଉ ଜଣେ ବାବୁ ତାଙ୍କୁ ଉଦ୍ଧାର କରି ପାଳିଥିଲେ । ସେ ବେଳେବେଳେ ଭାବେ ଏବଂ ଭୁଲିଯାଏ । ବର୍ତ୍ତମାନ ମଦନମୋହନ ହିଁ ତାର ସବୁକିଛି । ତାଙ୍କଠୁ ସେ ବାପାର ସ୍ନେହ ପାଇଛି । ମଦନମୋହନ ଆଉ ବେଶୀ ପଚାରନ୍ତି ନାହିଁ । ରାତି ହୋଇଯାଏ । ମିନି ଦଉଡ଼ିଯାଇ ଚୁଲିରେ ନିଆଁ ଲଗାଏ । ମଦନମୋହନ ଡାକନ୍ତି ସତରେ ଏ ଭଳିଆ ଜାଗାରେ ଯଦି ତାଙ୍କ ସାଙ୍ଗରେ କଥା ପଦେ କହିବାକୁ କେହି ନଥାନ୍ତେ ତେବେ ସେ ପାଗଳ ହୋଇଯାଆନ୍ତେ ।

ଛୁଟିଦିନ ହୋଇଗଲେ ମଦନମୋହନ ବାହାର ବାରଣ୍ଡାରେ ବସି ସକାଳର ସୂର୍ଯ୍ୟୋଦୟ ଏବଂ ସନ୍ଧ୍ୟାର ସୂର୍ଯ୍ୟାସ୍ତକୁ ଉପଭୋଗ କରନ୍ତି । ଚଢ଼େଇମାନଙ୍କର ଘରବାହୁଡ଼ା କିଚିରି ମିଚିରି ଶବ୍ଦ ତାଙ୍କ ମନକୁ ଦୋହଲାଇ ଦିଏ । ବସନ୍ତରେ କୋଇଲିର କୁହୁକୁହୁ ଶବ୍ଦ ତାଙ୍କ ହୃଦୟ ତନ୍ତ୍ରୀକୁ ଦୋହଲାଇ ଦିଏ । ମେଘୁଆ ଆକାଶକୁ ଦେଖି ସେ ମନକୁ ମନ ଗାଇ ଉଠନ୍ତି 'ମେଘ ବରଷିଲା ଟୁପୁରୁ ଟୁପୁରୁ କେଶୁର ମାଇଲା ଗଙ୍ଗା ।' ଘର ଭିତରୁ ଦଉଡ଼ି ଆସେ ମିନି 'ମତେ ଡାକୁଛ ବାବା ।' କଥା ବଦଳାଇବାକୁ ଯାଇ ମଦନମୋହନ ତାକୁ ଡାକି ପାଖରେ ବସାନ୍ତି । ପଚାରନ୍ତି 'ଆରେ ମିନି ତୁ ପାଠ ପଢ଼ିବୁ, ଅ ଆ ଶିଖିବୁ । ଆ ଆ ମୋ ପାଖରେ ବସ ।' ତାହାଳିରେ ଅବଧାନଙ୍କ ପାଖରେ ବସି ମିନି ସ୍ଲେଟ ଖଡ଼ିରେ ଗାରାଏ...ବ୍ରହ୍ମା...ବିଷ୍ଣୁ...ମହେଶ୍ୱର... ।

ଦିନେ ରାତିରେ ବର୍ଷା ଗର୍ଜି ଉଠିଲା, ତୁହାକୁ ତୁହା ବର୍ଷା ହେଲା, ଘର ଦୁଆର ପାଣି ଆଣ୍ଠୁଏ ହେଲା । ସ୍କୁଲ ବନ୍ଦ ହୋଇଗଲା । ମଦନମୋହନ ବର୍ଷାରେ ଭିଜିଗଲେ । ତାଙ୍କୁ ଥଣ୍ଡା ଧରିଲା । ଫଳରେ ମୁଣ୍ଡ ବିନ୍ଧିଲା, ରାତିରେ କଂପ ହୋଇ ଜ୍ୱର ଆସିଲା ।

ମିନି ଦେଖିଲା ବାବା ଜ୍ୱରରେ ବାଉଳି ଚାଉଳି ହେଉଛନ୍ତି । ବିଚରା ମୁଣ୍ଡ ଚିପିଦେଲା । କପାଳରେ ପାଣି ପଟି ଦେଲା । ଗୋଡ଼ ଘସି ଦେଲା । ମଦନମୋହନ ରାତିରେ ଶୋଇବାବେଳେ ମାଆଙ୍କ କଥା ମନେ ପକାଇଲେ । ମାଆ ଏମିତି ତାଙ୍କ ମୁଣ୍ଡ ଚିପି ଦେଉଥିଲେ । ଗୋଡ଼ରେ ଗରମ ତେଲ ମାଲିସ କରିଦେଉଥିଲେ । ଆଜି ଅନାଥ ବାଳିକା ମିନି ତାଙ୍କର ମା'ର କାମ କରୁଛି । ସେ ମିନି ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କଲେ । ଧୀରେ ଧୀରେ ମିନିର ସେବାରେ ସେ ସୁସ୍ଥ ହୋଇଉଠିଲେ । ତଥାପି ଦେହ ହାତରୁ ଦୁର୍ବଳତା କମି ନ ଥାଏ ।

ସମୟ ବିତିବା ସଙ୍ଗେ ସଙ୍ଗେ ମଦନମୋହନଙ୍କର ମାନସିକ ଦୁଶ୍ଚିନ୍ତା ବଢ଼ିବାରେ ଲାଗିଲା । ତାଙ୍କର ବାପା ମାଆ ଭାଇ ଭଉଣୀଙ୍କ କଥା ମନେ ପଡ଼ିଲା । ଏକାଜିଦରେ ସେ ଚାଲିଆସିଥିଲେ ଏଠିକୁ । କିନ୍ତୁ ଆସି ଦେଖିଲେ ପରିସ୍ଥିତି ଏଠି ସଂପୂର୍ଣ୍ଣ ଭିନ୍ନ । ଏଠି ବେଶିଦିନ ରହିଲେ ସେ ରୋଗାକ୍ରାନ୍ତ ହୋଇଯିବେ । ଏଠାକାର ଜଳବାୟୁ ତାଙ୍କ ଦେହରେ ଚଳୁନି । କିନ୍ତୁ ସେ ଯଦି ବଦଳି ପାଇଁ ଚେଷ୍ଟା କରିବେ ତେବେ ତାଙ୍କ ଯାଗାରେ ଏଠି କିଏ ଆସି ଜଏନ କରିବ । ଏଠି ତ ସାମାନ୍ୟତମ ସୁବିଧା ନାହିଁ । ତେବେ କେତେଦିନ ? ସେ ବଦଳି ପାଇଁ ଦରଖାସ୍ତ ଦେଲେ ।

ମିନି ବାବାଙ୍କର ଏତାଦୃଶ ବ୍ୟବହାର ଦେଖି ମନକୁ ମନ କଣ ସବୁ ଭାବି ଚାଲିଥାଏ । ଯା ଭିତରେ ସିଏ ସ୍ୱରବର୍ଣ୍ଣ, ବ୍ୟଞ୍ଜନବର୍ଣ୍ଣ, ଯୁକ୍ତାକ୍ଷର ଶିଖିଗଲାଣି । ମିନିର ପୋଷାକ ପତ୍ରରେ ମଧ ଶୃଙ୍ଖଳା ଆସିଲାଣି । ଏଣିକି ସିଏ ସକାଳୁ ଆସି ଫୁଲ ତୋଳିଦିଏ, ଠାକୁର ପୂଜା ମଧ କରିଦିଏ । ବାବାଙ୍କ ପାଇଁ ନାଲିଚାହା କରିଦିଏ । ବାବା ତା ସେବାରେ ଖୁବ୍ ଖୁସିଥିବାର ସେ ଅନୁଭବ କରେ ।

ଦିନେ ସିଏ ହଠାତ୍ ମିନିକୁ ଡାକି କହିଲେ, ଏଠି ତାଙ୍କର ରହିବା ଆଉ ସମ୍ଭବ ହେଉନି । ସରକାର ଯଦି ତାଙ୍କୁ ବଦଳି ନ କରିବେ ତେବେ ସେ ଲମ୍ବାଛୁଟିରେ ଚାଲିଯିବେ, ଆଉ ଆସିବେ ନାହିଁ । ମିନି ଏତେବେଳକୁ ସବୁ କଥା ବୁଝିଗଲାଣି । 'ବାବା, ତେବେ ଏଠି ମୋ କଥା, ମୋ ପାଠ କଥା, ବାବା ଆପଣ ମୋ କଥା ରଖନ୍ତୁ, ମୋତେ ଆପଣଙ୍କ ସାଙ୍ଗରେ ନେଇ ଚାଲନ୍ତୁ, ମୁଁ ଆପଣଙ୍କର ସେବା କରିବି ।' ବାବା ମିନି କଥାରେ କିଛି ସମୟ ଧରି କିଛି କହି ପାରିଲେ ନାହିଁ । ମନେ ମନେ ଭାବିଲେ ଅନାଥ ବାଳିକାଟିଏ ବିଚରା, ଏଇଟା ଗାଁ ଯାଗା, ଏ ଗାଁ ଲୋକେ ? ତଥାପି ସେ ତାକୁ ବୁଝାଇବାକୁ ଚେଷ୍ଟାକଲେ । ତେବେ ଏତିକି ତାକୁ ଆଶ୍ୱାସନା ଦେଲେ ଯେ କେହି ତ ଜଣେ ଏଠିକୁ ଆସିବ.. ମୁଁ ତାଙ୍କୁ ସବୁ କଥା ବୁଝାଇଦେବି । ତାର କିଛି ଅସୁବିଧା ହେବ ନାହିଁ । ମିନି

କହିଲା 'ତମକୁ କିଛି କରିବାକୁ ହେବ ନାହିଁ, ଯାହା କରିବାର କଥା ମୁଁ କରିବି - ମୁଁ ଆଉ ଏଠି ରହିବି ନାହିଁ ।'

ମଦନମୋହନଙ୍କର ଯିବାର ସମୟ ଉପସ୍ଥିତ ହେଲା । ସେ ମିନିକୁ ଡ଼ାକି ଘରର ଚାବି ଦେଲେ ତା ସହିତ କିଛି ଟଙ୍କା ମଧ୍ୟ । ମିନି ତାଙ୍କ ପାଦ ଧରି କାନ୍ଦି ଉଠିଲା 'ମୁଁ ଯିବି ବାବା ମୁଁ ଯିବି, ମୋର ଏ ପଇସା କଣ ହେବ, ତମେ ତ ରହିବ ନାହିଁ, ମୁଁ କାହାର ଗୋଡ଼ ଘସିଦେବି, ମୁଣ୍ଡ ଚିପିଦେବି, ମତେ କିଏ ପାଠ ପଢ଼େଇ ଦେବ ।' ଏତକ କହି ମିନି ଘରୁ ବାହାରି ଚାଲିଗଲା ।

ମଦନମୋହନ ସାଙ୍ଗରେ ଆଣିଥିବା ବ୍ୟାଗ ସୁଟକେଶ୍ ଇତ୍ୟାଦି ଧରି ଘରୁ ବାହାରିଗଲେ । ଯେତେବେଳେ ସେ ଗାଁ ଛାଡ଼ି ନଈ ପାର ହେବା ପାଇଁ ଡଙ୍ଗାରେ ବସିଲେ ସେତେବେଳେ ଜଣାପଡ଼ିଲା ସତେ ଯେପରି ମିନି ତାଙ୍କ ଗୋଡ଼ଧରିଛି ଏବଂ ଛାଡୁନାହିଁ । ସେ ହୃଦୟରେ ଦାରୁଣ ବ୍ୟଥା ଅନୁଭବ କଲେ । ଗୋଟିଏ ସାଧାରଣ ଗ୍ରାମ୍ୟ ବାଳିକାର ମୁହଁର ଛବିଟି ଯେମିତି ଏକ ବଡ଼ ବିଶ୍ୱବ୍ୟାପୀ ଅବ୍ୟକ୍ତ ମର୍ମବ୍ୟଥା ପ୍ରକାଶ କରିବାକୁ ଲାଗିଲା । ତାଙ୍କର ଇଚ୍ଛା ହେଲା ପୁଣି ଫେରିଯାଇ ଜଗତରୁ ବିଚ୍ଛିନ୍ନ ହୋଇ ଯାଇଥିବା, ସେଇ ଅନାଥିନୀ ବାଳିକାକୁ ସାଙ୍ଗରେ ଧରି ଫେରିଆସିବେ । କିନ୍ତୁ ସେତେବେଳକୁ ଡଙ୍ଗାର ପାଲରେ ପବନ ଲାଗିଯାଇଥିଲା ଏବଂ ଡଙ୍ଗାର ଗତି ବଢ଼ିଯାଇଥିଲା । ସେ ନିଜକୁ ନିଜେ କ୍ଷମା ଦେଇ କହୁଥିଲେ, ଏ ଜୀବନରେ ଏମିତି କେତେ ବିଚ୍ଛେଦ, କେତେ ମୃତ୍ୟୁ ଅଛି ତାର ହିସାବ କିଏ ରଖୁଛି । ଏ ପୃଥିବୀ, ଏଠି କେହି କାହାର ନୁହନ୍ତି । ପବନର ଗତି ବଢୁଥିଲା ଏବଂ ତା' ସହିତ ଡଙ୍ଗାର ଗତି ମଧ୍ୟ ।

❖

# ପ୍ରେମ

ସୁକାନ୍ତ ନିଜ ସ୍ତ୍ରୀକୁ ସନ୍ଦେହ କରିବାକୁ ଆରମ୍ଭ କରିଦେଲା । ସୁରଭି ଦେଖିବାକୁ ଅନନ୍ୟା । ଟଣା ଟଣା ଆଖି । ଶୁଆ ନାକ ପରି ନାକ । ଉଚ୍ଚା କପାଳ, ଲମ୍ବା କେଶ । ଗୋରା ଡଉଲ ଡାଉଲ ଚେହେରା । ସତେ ଯେପରି ଭଗବାନ ତାକୁ ଗୋଟିଏ ଚାଉଳରେ ଗଢ଼ିଛନ୍ତି । ସୁରଭିର ପିଲାଦିନର ନାଁ ଥିଲା ଲକ୍ଷ୍ମୀ । ସୁରଭିର ବାପା ମାଆ ଲକ୍ଷ୍ମୀ ଠାକୁରାଣୀଙ୍କୁ ପୂଜା କରି ତାକୁ ପାଇଥିଲେ । ଏବଂ ସୁରଭିର ଜନ୍ମ ହିଁ ତାଙ୍କ ଘରକୁ ଧନ ଜନ ଗୋପ ଲକ୍ଷ୍ମୀରେ ଭରିଦେଇଥିଲା ବୋଲି ସିଏ କୁହନ୍ତି । ସୁକାନ୍ତ କିନ୍ତୁ ଅତ୍ୟନ୍ତ ଗରିବ ଘରୁ ଆସିଥିଲା । ତାର ବାପା ମାଆଙ୍କର ଯାହା କିଛି ଜମିବାଡ଼ି ଥିଲା ତାକୁ ବିକି ଦେଇ ସୁକାନ୍ତ ଆସିଥିଲା ସହରକୁ ଚାକିରୀ ଖୋଜିବା ଆଶାରେ ଏବଂ ଶେଷକୁ ନିରାଶ ହୋଇ ଗୋଟିଏ ଛୋଟିଆ ମୋଟିଆ ବ୍ୟବସାୟ ଆରମ୍ଭ କରିଛି ସହରରେ । ସୁରଭିର ବାପା ଏ ସହରର ନାମଜାଦା ବ୍ୟବସାୟୀ । କେବଳ ସୁକାନ୍ତର ସୁନ୍ଦର ବ୍ୟବହାର ଯୋଗୁଁ ସେ ନିଜ ଝିଅକୁ ତା ହାତରେ ଛନ୍ଦି ଦେଇଛନ୍ତି । ସୁରଭି ମଧ୍ୟ ସେଥିପାଇଁ ଅନୁତାପ କରିନାହିଁ । ଉତ୍ତମ ସ୍ୱଭାବର ପିଲାଟିଏ ପାଇ ସୁରଭିର ବାପା ମାଆ ଗର୍ବ ଅନୁଭବ କରନ୍ତି । ହେଲେ ସୁରଭିର ଏହି ସୁନ୍ଦର କମନୀୟ ଚେହେରାକୁ ନେଇ ସୁକାନ୍ତର ସାଙ୍ଗ ମାନେ ବେଶ୍ ଚର୍ଚ୍ଚା କରନ୍ତି ଏବଂ ଏଥିପାଇଁ ସୁକାନ୍ତକୁ ଈର୍ଷା କରନ୍ତି ଏବଂ ଏହି ଈର୍ଷା ହିଁ ଆଜି ସୁକାନ୍ତର ଅଶାନ୍ତିର କାରଣ ହୋଇଛି । ସେ ସୁରଭିକୁ ସନ୍ଦେହ କରିବା ଆରମ୍ଭ କରିଛି । ଏପରିକି ତାକୁ ବାରଣ କରିଛି ତା ସାଙ୍ଗମାନଙ୍କ ସାଙ୍ଗରେ ହସିବା ପାଇଁ, କଥା କହିବା ପାଇଁ । ଯେଉଁଦିନ ସୁକାନ୍ତର ସାଙ୍ଗମାନେ ଆସନ୍ତି ସେଦିନ ସୁକାନ୍ତ ଆଉ କାମକୁ ଯାଏ ନାହିଁ, ସୁରଭିକୁ ଜଗିରୁହେ ସାରାଦିନ, ତା ସାଙ୍ଗମାନେ ଗଲା ପର୍ଯ୍ୟନ୍ତ । ନୂଆ ନୂଆ ଏସବୁ ସୁରଭିକୁ ଭଲ ଲାଗୁଥିଲା, କିନ୍ତୁ କେତେଦିନ ସେ ଘର ଭିତରଟାରେ ଏକୁଟିଆ ବସିବ ? କାହା ସାଙ୍ଗରେ କଥାବାର୍ତ୍ତା କରିବ ନାହଁ ଏପରିକି ସ୍ତ୍ରୀ ଲୋକମାନଙ୍କ ସହିତ ମଧ୍ୟ ।

ଦିନାକେତେ ସୁକାନ୍ତ ସୁରଭିକୁ ଜଗିବା ପାଇଁ ଚାକର ବନ୍ଦୋବସ୍ତ କଲା କିନ୍ତୁ ସେଥିରେ ତାର ମନ ସନ୍ତୁଷ୍ଟ ହେଲାନାହିଁ ।

ସୁକାନ୍ତ ଦେଖିଲା ସୁରଭି ସେ ଚାକର ଟୋକା ସାଙ୍ଗରେ ଗପ କରୁଛି । ଏହା ମଧ୍ୟ ସୁକାନ୍ତକୁ ପସନ୍ଦ ହେଲାନାହିଁ । ସେ ସୁରଭିକୁ କିଛି ନ କହି ଚାକର ବଦଳରେ

ଚାକରାଣୀ ରଖିଲା । ସୁରଭିକୁ ସୁବିଧା ହେଲା । ସୁରଭି ଭାବିଲା ଯାହାହେଉ ସୁକାନ୍ତର ପରିବର୍ତ୍ତନ ହୋଇଛି । ସେ ସନ୍ଧ୍ୟାବେଳେ ଚାକରାଣୀକୁ ସାଙ୍ଗରେ ନେଇ ବୁଲିବାକୁ ଗଲା, ମାର୍କେଟ ଗଲା । ସାଙ୍ଗମାନେ କହିଲେ 'ଯାହାହେଉ ସୁକାନ୍ତଟା ବାଗେଇଗଲା, ସ୍ତ୍ରୀକୁ ବୁଲିବାକୁ ଛାଡ଼ିଲାଣି ।' ସାଙ୍ଗମାନେ କହିଲେ 'ବାଃ ସୁକାନ୍ତ ବାଃ ଯାହାହେଉ ତୁ ଟା ଭାଗ୍ୟବାନ ନହେଲେ ଏଡ଼େ ସୁନ୍ଦରୀ ରୂପବତୀ ଗୁଣବତୀ ଲକ୍ଷ୍ମୀବନ୍ତ ସ୍ତ୍ରୀଟାଏ ପାଇଥାନ୍ତୁ କେମିତି ?' ଏହି କଥା ପଦକ ସୁକାନ୍ତର ଦେହରେ କଣ୍ଟା ପରି ଫୋଡ଼ି ହୋଇଗଲା । ସେ ଘରକୁ ଆସି ଚାକରାଣୀକୁ ବାହାର କରିଦେଲା । ଏଥର ସେ ବାହାରେ ଗୋଟାଏ ପହରାଦାର ରଖିଲା ଏବଂ ସୁରଭିକୁ କହିଲା 'ତମେ ଆଉ ପଦାରେ ଗୋଡ଼ ରଖିବ ନାହିଁ, ତମର ଯାହା ଦରକାର ମୁଁ ଆଣିଦେବି ।'ସୁରଭି ଏଥର ସତରେ ରାଗିଲା ଏବଂ କହିଲା 'ତମେ ଏଡ଼େ ସଂକୀର୍ଣ୍ଣମନା ବୋଲି ମୁଁ ଜାଣିନଥିଲି ।' ସୁକାନ୍ତ ଏ ଭଳିଆ ଉତ୍ତର ଶୁଣି ତାକୁ ମାରିବାକୁ ହାତ ଉଠାଇଦେଲା । ଧୀରେ ଧୀରେ ଘରେ ଅଶାନ୍ତିର ବହ୍ନି ପ୍ରଜ୍ଜ୍ୱଳିତ ହେଲା ଏବଂ ସୁକାନ୍ତ ସୁରଭିକୁ ବାରମ୍ବାର ତିରସ୍କାର କରିବାକୁ ଆରମ୍ଭ କଲା ।

ସୁରଭି ଭାବୁଥିଲା ସୁନ୍ଦର ହେବାଟା କଣ ତାର ଦୋଷ ? ତାର ବାପା ମାଆ ମଧ୍ୟ ସୁକାନ୍ତ ସାଙ୍ଗେ ତାର ବାହାଘର କରି କଣ ଦୋଷ କଲେ । ସେମାନେ ବୋଧହୁଏ ଭାବିଥିଲେ ପିଲାଟାର ଚରିତ୍ର ଭଲ ଏଣୁ ଝିଅଟା ତାଙ୍କର ଭଲରେ ରହିବ । କିନ୍ତୁ ଫଳ ହେଲା ଓଲଟା । ସୁକାନ୍ତର ଅକାରଣରେ ସୁରଭିକୁ ସନ୍ଦେହ କରିବାଟାକୁ ସୁରଭିର ଜମା ସହ୍ୟ ହେଲାନାହିଁ । ବିପଦରେ ପଡ଼ିଲେ ମଣିଷ ଭଗବାନଙ୍କୁ ହିଁ ଆଶ୍ରୟ କରେ, ଏଇଟା ଭାବି ସେ ନିଜର ମନ ପରିବର୍ତ୍ତନ ବା ଗୃହ ଶାନ୍ତି ପାଇଁ ଜଣେ ବାବାଙ୍କର ଆଶ୍ରୟ ନେଲା । ଏବେ ସୁବିଧା ପାଇଲେ ସେ ଆଶ୍ରମ ଯାଇ ପୂଜା ଅର୍ଚ୍ଚନା କରି ଆସୁଥିଲା । ସୁକାନ୍ତ ଏ କଥା ଜାଣିଲେ ମଧ୍ୟ ସୁରଭିକୁ କିଛି କହୁନଥିଲା କାରଣ ସୁରଭି ଧର୍ମ କାମରେ ମନୋନିବେଶ କରିଥିଲା । କିନ୍ତୁ ଧୀରେ ଧୀରେ ସେ ବାବାଙ୍କୁ ମଧ ଈର୍ଷା କରିବାକୁ ଆରମ୍ଭ କଲା ।

ଦିନେ ସୁକାନ୍ତ ଘରକୁ ଫେରି ସୁରଭିକୁ ପ୍ରଶ୍ନ କଲା -

'ତମେ କଣ ସେ ବାବାଙ୍କ ଆଶ୍ରମକୁ ସବୁଦିନେ ଯାଉଛ ?'

'ହଁ କ'ଣ ହେଲା ସେଇଠୁ', ସୁରଭି ଉତ୍ତର ଦେଲା ।

'ସେଇଠି ତମେ ଘଣ୍ଟା ଘଣ୍ଟା ଧରି କ'ଣ କର ?'

'ପୂଜା ଅର୍ଚ୍ଚନା କରେ, ଅନ୍ୟମାନେ ମଧ୍ୟ କରନ୍ତି, ତା ଛଡ଼ା ମୋର ଘରେ

କଣ କାମ ଯେ ?'

'ଖାଲି ପୂଜା ଅର୍ଚ୍ଚନା ନା ଆଉ କିଛି ?'

ଏଥର ସୁରଭିର ରାଗ ପଞ୍ଚମକୁ ଚଢ଼ିଗଲା, 'ମୁଁ ମୋର ଯାହା ଇଚ୍ଛା ତାହା କଲି ତମର କଣ ଯାଏ ଆସେ ?'

'ମୁଁ ଦେଖୁଛି ତମର ଗର୍ବ ହୋଇଗଲାଣି, ଏଇ ରୂପ ହିଁ ତମର ଗର୍ବର କାରଣ ।'

'ତମେ ଦେଖିବ, ମୁଁ କଣ କରିପାରେ ?'

ସୁରଭି କିଛି କହିଲା ପୂର୍ବରୁ ଘର ଭିତରେ ତାକୁ ବନ୍ଦୀ କରି ସୁକାନ୍ତ ବାହାରୁ ତାଲା ପକାଇ କ୍ରୋଧରେ ଜର୍ଜରିତ ହୋଇ ଚାଲିଗଲା ଏବଂ ତାହାପୂର୍ବରୁ କହିଗଲା 'ଏଥର ତୁ କେତେ ପ୍ରେମ କରିବୁ କର ।'

ବନ୍ଦ ଘରଟାରେ କିଛି ସମୟ ପଡ଼ିରହି ସୁରଭି ଅଶ୍ରୁତର୍ପଣ କରିବାରେ ଲାଗିଲା । ତା ମାଆଙ୍କୁ ବାରମ୍ବାର ମନେ ପକାଇଲା, ବାପାଙ୍କୁ ସ୍ମରଣ କଲା । ସେମାନେ ଝିଅକୁ ବାହାଦେଇ ନିଜର କର୍ମ ସଂପାଦନ କରିଛନ୍ତି । ଏବେ ଝିଅର ଧର୍ମ ହେଉଛି ସ୍ୱାମୀ ସାଙ୍ଗରେ ରହି ସୁଖମୟ ସଂସାର ଗଠନ କରିବା । ସେ ଭାବିଲା ଏ ସଂସାରଟା କେତେ ପାପରେ ଭରି ରହିଛି । ସୁରଭିର ଧାର୍ମିକ ମନୋଭାବକୁ ସୁକାନ୍ତ ଯେ ଗ୍ରହଣ କରିନାହିଁ ଏକଥା ଭାବି ଭାବି ସେ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲା । ଶେଷକୁ ନିଜେ ନିଜର ବୁଦ୍ଧି ପ୍ରୟୋଗ କରି କୌଣସିମତେ ଘର ବାହାରକୁ ଚାଲିଆସିଲା ।

ବାବା ସ୍ୱାମୀ ରାମଦାସ ସେ ଅଞ୍ଚଳର ଜଣେ ପ୍ରଖ୍ୟାତ ସନ୍ୟାସୀ, ଯାହାଙ୍କର ଶରଣାପନ୍ନ ହୋଇଥିଲା ସୁରଭି । ସେ ଆଶ୍ରମରେ ପୂଜା ଅର୍ଚ୍ଚନାରେ ବ୍ୟସ୍ତ ଥିଲେ । ବସ୍‌ମାନେ ଚାମର ଢ଼ାଳୁଥିଲେ । ସନ୍ଧ୍ୟା ସମୟ ଆଗତ ପ୍ରାୟ । ଆଉ କିଛି ସମୟରେ ସୂର୍ଯ୍ୟ ଅସ୍ତ ଯିବେ - ଚନ୍ଦ୍ର ଆସିବ । ଆକାଶରେ ତାରା ଦେଖାଦେବେ । ଆଶ୍ରମରେ ସନ୍ଧ୍ୟା ପୂଜା ପାଇଁ ଭକ୍ତମାନଙ୍କର ଲମ୍ବା ଧାଡ଼ି ଲାଗିଥିଲା । ସୁରଭି ସେ ସବୁକୁ ଅତିକ୍ରମ କରି ସନ୍ୟାସୀଙ୍କ ପାଦତଳେ ପଡ଼ିଗଲା । 'ମତେ ରକ୍ଷାକର ରକ୍ଷାକର ବାବା । ମତେ ମୋ ପାଷାଣ୍ଡ ସ୍ୱାମୀଙ୍କର ଦୌରାତ୍ମ୍ୟରୁ ରକ୍ଷାକର, ମୁଁ ଯେ ପାରୁନି ପ୍ରଭୁ ମୁଁ ପାରୁନି । ମୋ ଦେହରୁ ଏ ସୌନ୍ଦର୍ଯ୍ୟ ଅପହରଣ କର, ମତେ ସାଧାରଣ ନାରୀଟିଏ କରିଦିଅ, ମୋ ସୌନ୍ଦର୍ଯ୍ୟ ହିଁ ମୋ ସ୍ୱାମୀଙ୍କର ଅଶାନ୍ତିର କାରଣ ହୋଇଛି । ମୋ ଘର ଆଜି ଭାଙ୍ଗି ଯାଇଛି, ମତେ ଉଦ୍ଧାର କର ।'

ଗୁରୁଦେବ ଧ୍ୟାନମଗ୍ନ ଥିଲେ - ତାଙ୍କ ଧ୍ୟାନ ଭଗ୍ନ ହେଲା... ସୁରଭି ତାଙ୍କ

ପାଦ ଧରି କାନ୍ଦୁଥିଲା । ସେ ତାକୁ ଧରି ଉଠାଇଲେ - କହିଲେ 'ତମେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କର, ତମର ସମସ୍ୟାର ସମାଧାନ ଅଚିରେ ହେବ ।'

❋ ❋ ❋

ସୁକାନ୍ତ ସନ୍ଧ୍ୟାବେଳେ କାମରୁ ଫେରିଆସି ଦେଖେତ ସୁରଭି ବାହାରେ ବସି କାନ୍ଦୁଛି । ସୁକାନ୍ତ ପଚାରିଲା ଏ ଘରକୁ କିଏ ଆସିଥିଲା କି ? ସୁରଭି କହିଲା 'ମୁଁ ଯାଇଥିଲି ଗୁରୁଦେବଙ୍କ ପାଖକୁ ।' ସୁକାନ୍ତ ହଠାତ୍ କିଛି ଠଉରେଇ ପାରିଲାନି - ଦେଖିଲା ସୁରଭି କୌଣସିମତେ ଦୁଆର ଖୋଲିଦେଇଛି । ସେ ଖୁବ୍ ଉତ୍‌କ୍ଷିପ୍ତ ହୋଇ କହିଲା 'କାହା ଅନୁମତିରେ ?'

ସୁରଭି ଉତ୍ତର ଦେଲା 'ଏଇଟା ମୋ ନିଜ ଇଚ୍ଛାରେ ମୁଁ କରିଛି, ତମେ ମନା କରିବାକୁ କିଏ ?'

ସୁକାନ୍ତ ସେଇଦିନଠାରୁ ଘର ଚାରିପଟେ ପହରା ଦେବାପାଇଁ ଲୋକର ବନ୍ଦୋବସ୍ତ କରି ପୁନରାୟ ବାହାରକୁ ଚାଲିଗଲା । ଏକଥା ସହର ସାରା ଚର୍ଚ୍ଚାର ବିଷୟବସ୍ତୁ ହୋଇଗଲା ଏବଂ ସମସ୍ତେ ସୁକାନ୍ତ ଏବଂ ସୁରଭିକୁ ନିନ୍ଦା କରିବାକୁ ଲାଗିଲେ । ଏଥିରେ ସୁରଭି ଅଶାନ୍ତିରେ ସମୟ କାଟିବାକୁ ଲାଗିଲା ।

❋ ❋ ❋

ଏଣେ ଆଶ୍ରମର ଗରୁଦେବଙ୍କ ମନ ବିଚଳିତ ହେଲା । ଜୀବନ ସାରା ସନ୍ନ୍ୟାସ ବ୍ରତ ଗ୍ରହଣ କରିବାକୁ ପଣ କରିଥିବା ଗୁରୁଦେବଙ୍କର ମନ ଟହଲିବାକୁ ଆରମ୍ଭ କଲା । ତାଙ୍କର ପୂଜାର୍ଚ୍ଚନାରେ ବ୍ୟତିକ୍ରମ ଦେଖାଦେଲା । ଅପରୂପା ସୁରଭିର ସୌନ୍ଦର୍ଯ୍ୟ ତାକୁ ଆକର୍ଷିତ କଲା । ସେ ସୁନ୍ଦରୀ ସୌମ୍ୟକାନ୍ତି ଯୁବତୀକୁ ଦର୍ଶନ କରିବାକୁ ବ୍ୟଗ୍ର ହୋଇଉଠିଲେ । ତାଙ୍କ ଚାରିପଟ ଖାଲି ସୁରଭିମୟ ହୋଇଗଲା । ସନ୍ନ୍ୟାସୀଙ୍କର ଏହି ଚିନ୍ତାଧାରାକୁ ତାଙ୍କ ଭକ୍ତମାନେ ଲକ୍ଷ୍ୟକଲେ ମଧ ତାଙ୍କୁ କେହି କିଛି କହିବା ପାଇଁ ସାହସ କଲେନାହିଁ । ଅତୀତରେ ମଧ ଏହି ଭଳି ଅନେକ ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ଦେବତାମାନେ ମଧ ସୁନ୍ଦରୀ ତରୁଣୀ ମାନଙ୍କର ମାୟାରେ ଛନ୍ଦି ହୋଇଯିବା ନଜିର ଅଛି ।

ସନ୍ନ୍ୟାସୀ ଚିଟାଉ ଲେଖିଲେ 'ତୁମ୍ଭେ ଯଦି ତୁମ୍ଭର ମଙ୍ଗଳ ଚାହୁଁଥାଅ ତେବେ ଅବିଳମ୍ବେ ସେ ସ୍ଥାନ ପରିବେଶ ପରିତ୍ୟାଗ କର, ମୁଁ ତୁମ୍ଭକୁ ନେଇ ଏକ ଅଜ୍ଞାତ ସ୍ଥାନକୁ ଚାଲିଯିବି । ଆସନ୍ତା ସପ୍ତାହର ୨୦ ତାରିଖରେ ସନ୍ଧ୍ୟା ପାଞ୍ଚଟାବେଳେ ମୁଁ ତୁମର ବାଡ଼ିଆଡ଼େ ପୁଷ୍କରିଣୀ ପାଖରେ ଅପେକ୍ଷା କରିଥିବି ।'

ସୁରଭି ପତ୍ର ପାଇ ଅତ୍ୟନ୍ତ ଆନନ୍ଦରେ କାଳାତିପାତ କରିବାରେ ଲାଗିଲା । ସେଦିନ ରାତିରେ ସେ ତାକୁ ନିଜ ତକିଆ ତଳେ ରଖି ଆନନ୍ଦରେ ନିଦ୍ରା ଗଲା । ସୁକାନ୍ତ କିଛି ଜାଣିପାରିଲା ନାହିଁ । ନିର୍ଦ୍ଧାରିତ ଦିନ ସକାଳୁ ଉଠି ଦେଖେତ ଚିଠିଟି ତକିଆ ତଳେ ନାହିଁ । କଣ କେହି ତାକୁ ନେଇଗଲା କି ? ସୁକାନ୍ତ ଛଡ଼ା ଆଉ କେହି ହୋଇନପାରେ । ଏଥର ସୁକାନ୍ତ କିଛି ବିଭତ୍ସ କାଣ୍ଡ କରିବସିବ - ସେ ନିଶ୍ଚୟ ତାକୁ ଦୋଚାରୁଣୀ,ପାପୀ, ଛିଣ୍ଡାଳୀ କହି ଗାଳି ବର୍ଷଣ କରିବ ଏବଂ ତାର ବାଳ ଧରି ଘୋଷାରି ଘୋଷାରି ତାକୁ ରାସ୍ତାକୁ ବାହାର କରିଦେବ । କିନ୍ତୁ ଯେ କୌଣସିମତେ ସେ ଚିଠିଟିକୁ ହସ୍ତଗତ କରିବା ପାଇଁ ସ୍ୱାମୀ ରହୁଥିବା ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କଲା ।

ସ୍ୱାମୀଙ୍କ ଘରେ ପ୍ରବେଶ କରନ୍ତେ ସେ ଦେଖିଲା ସୁକାନ୍ତ ଚଟାଣରେ ପଡ଼ି ଗଁ ଗଁ ଚିତ୍କାର କରୁଛି ଏବଂ ତାର ମୁହଁରୁ ଫେଣ ବାହାରୁଛି । ସୁରଭିର ଚିଠି ଖଣ୍ଡିକ ତାର ହାତ ମୁଠାରେ ଅଛି । ସୁରଭି ଚିଠି ଖଣ୍ଡିକ କୌଣସିମତେ ତା ହାତରୁ ଉଦ୍ଧାର କଲା ଏବଂ ତୁରନ୍ତ ଡାକ୍ତର ଡକାଇ ପଠାଇଲା ।

ଡାକ୍ତର ତୁରନ୍ତ ଆସି ପରୀକ୍ଷା କଲେ ଏବଂ କହିଲେ 'ସୁକାନ୍ତ ପିଣ୍ଡରେ ଆଉ ପ୍ରାଣ ନାହିଁ ।' ସୁରଭି କିଂ କର୍ତ୍ତବ୍ୟ ବିମୂଢ଼ା ହୋଇଗଲା । ଏହି ପରିସ୍ଥିତିରେ ତାର କର୍ତ୍ତବ୍ୟ କଣ ସେ ସ୍ଥିର କରିପାରିଲା ନାହିଁ । ସେତେବେଳକୁ ସୁକାନ୍ତର ମୃତ୍ୟୁ ଖବର ଶୁଣି ତାର କିଛି ବନ୍ଧୁ ବାନ୍ଧବମାନେ ତା ଘରେ ଉପସ୍ଥିତ ହେବାକୁ ଆରମ୍ଭ କଲେଣି ।

ସେପଟେ ସେ କବାଟ ଖୋଲି ଦେଖିଲା ଯେ ସନ୍ୟାସୀ ପୋଖରୀ କୂଳରେ ଅପେକ୍ଷା କରି ରହିଛନ୍ତି । ସୁରଭିକୁ ଦେଖି ପାଗଳଙ୍କ ପରି ଚିତ୍କାର କଲେ 'ସୁରଭି, ତମେ ଚାଲିଆସ ସୁରଭି, ଆମେ ଏଇକ୍ଷଣି ଏ ସ୍ଥାନ ପରିତ୍ୟାଗ କରିବା ।' ସୁରଭି ଉତ୍ତରରେ କହିଲା 'ଆପଣ ଅପେକ୍ଷା କରନ୍ତୁ ଗୁରୁଦେବ, ମୁଁ ଆସୁଛି ।'

କିଛିକ୍ଷଣ ପରେ ଶବ ସତ୍କାର ପାଇଁ ଅପେକ୍ଷା କରୁଥିବା ଲୋକେ ଘର ଭିତରକୁ ପ୍ରବେଶ କଲେ । ସେମାନେ ସୁକାନ୍ତର ଘର ଭିତରକୁ ଯାଇ ଦେଖିଲେ ସୁକାନ୍ତର ମର ଶରୀର ତଳେ ପଡ଼ିଛି ଏବଂ ତା ପାଖରେ ସୁରଭିର ନିଶ୍ଚଳ ଶରୀର ମଧ୍ୟ । ଲୋକେ କୁହାକୁହି ହେଉଥିଲେ 'ଆହା ଏ କି ମରଣ, ଏହାକୁ କୁହାଯାଏ ଶୁଭ ମୃତ୍ୟୁ ।'

❖

# ମୂଲ୍ୟହୀନ ରାଜନୀତି

ଦୀର୍ଘ ଜୀବନ ।

ଦୀର୍ଘ ରାସ୍ତା ।

ଦୀର୍ଘ ସମୟ ।

ତିରିଶି ବର୍ଷର ରାଜନୈତିକ ଜୀବନ ।

ଅନେକ ଘଟଣା ଦୁର୍ଘଟଣାରେ ପରିପୂର୍ଣ୍ଣ ।

କେତେ କରୁଣମୟ ପରିସ୍ଥିତି ଦେଇ ଗତି କରିଛନ୍ତି ସେ ।

ସେସବୁ ଅନେକ ଲୋମହର୍ଷଣକାରୀ କାହାଣୀ ।

ବେଳେବେଳେ ନବକିଶୋର ବାବୁ ନିଜକୁ ପଚାରନ୍ତି କାହିଁକି ଏ ରାଜନୀତି ଭିତରକୁ ପ୍ରବେଶ କଲେ ଆଉ କ'ଣ ପାଇଲେ ? ଅବଶ୍ୟ ସେ ଯାହା ପାଇଛନ୍ତି ତାଙ୍କରି ପରାକାଷ୍ଠା ଯୋଗୁଁ ପାଇଛନ୍ତି । ରାଜନୀତିରେ ସେ କିଛି ସ୍ୱଚ୍ଛତା ଆଣିବାକୁ ଅବଶ୍ୟ ସେ ସକ୍ଷମ ହୋଇଛନ୍ତି ଯେଉଁଥିପାଇଁ ସେ ବର୍ତ୍ତମାନ ମନ୍ତ୍ରୀ ଥାଇ ମୁଖ୍ୟମନ୍ତ୍ରୀ ପଦ ପାଇଁ ଦଉଡ଼ରେ ଅଛନ୍ତି । ଯେ କୌଣସି ମୁହୂର୍ତ୍ତରେ ହାତୀ ତାଙ୍କ ମୁଣ୍ଡରେ ସୁନା କଳସୀ ଢାଳିପାରେ । କିଏ କହିବ ରାଜନୀତିରେ ଏ ଖେଳ ତାଙ୍କ ସପକ୍ଷରେ ନଯିବ ବୋଲି । ରାଜନୀତି ଏକ ସମୟର କଥା । ସମୟ ଆସିଲେ ସବୁକିଛି ଅସମ୍ଭବ ସମ୍ଭବ ହୋଇପାରେ । ବର୍ତ୍ତମାନ ପରିସ୍ଥିତିରେ ତାଙ୍କୁ ଅବସ୍ଥା ଦେଖି ଗୋଟି ଚଳେଇବାକୁ ପଡ଼ିବ । ବର୍ତ୍ତମାନର ମୁଖ୍ୟମନ୍ତ୍ରୀଙ୍କର ଆସନ ଦୋହଲିବାକୁ ଆରମ୍ଭ କରିଛି । ସେ ମୁଖ୍ୟମନ୍ତ୍ରୀଙ୍କର ବିଶ୍ୱସ୍ତ ଲୋକ ଏବଂ ରାଜ୍ୟର ଅନ୍ୟତମ ଟାଣୁଆ ମନ୍ତ୍ରୀ । ଏଣୁ ଆସନ୍ତା କାଲି ତାଙ୍କୁ ଡକା ହୋଇଛି ଏକ ରୁଦ୍ଧଦ୍ୱାର ବୈଠକ ପାଇଁ । ଯଦି ସମୟ ଠିକ୍ ଥାଏ ତେବେ ତାଙ୍କୁ ମୁଖ୍ୟମନ୍ତ୍ରୀ ପଦ ହଠାତ୍ ମିଳିଯିବାଟା କିଛି ବିଚିତ୍ର ନୁହେଁ । ସାମ୍ବାଦିକମାନଙ୍କର ବାରମ୍ବାର ସେହି ପ୍ରଶ୍ନକୁ ସେ ଏଡ଼ାଇ ଦେଇ ଚାଲିଛନ୍ତି । ଆଜି ମନ୍ତ୍ରୀ ନବକିଶୋର ବାବୁ କୋରାପୁଟ୍ ଗସ୍ତରେ ଆସିଛନ୍ତି । ଆଜି ତାଙ୍କର ବହୁବିଧ କାର୍ଯ୍ୟକ୍ରମ ରହିଛି । କିନ୍ତୁ ତାକୁ କାଣ୍ଟଛାଣ୍ଟ କରି ସେ ଖୁବ୍ ଶୀଘ୍ର କାଲି ସକାଳୁ ବାହାରିଯିବେ ଭୁବନେଶ୍ୱର । ଏହି କୋରାପୁଟକୁ ଆଗରୁ ଅନେକବାର ଆସିଛନ୍ତି ମନ୍ତ୍ରୀ ଥିଲାବେଳେ ଏବଂ ସାଧାରଣ ନାଗରିକଟିଏ ଥିଲାବେଳେ । କୋରାପୁଟ୍‌ର ପାହାଡ଼ିଆ ଶୋଭା ତାଙ୍କୁ ଆକର୍ଷିତ କରିଛି ।

ସାଙ୍ଗରେ ଅଛନ୍ତି ମନ୍ତ୍ରୀଙ୍କର ପ୍ରାଇଭେଟ୍ ସେକ୍ରେଟେରୀ, ପିଅନ୍ ଏବଂ ତାଙ୍କର ଦଳର ଲୋକ । ସେମାନେ ମନ୍ତ୍ରୀଙ୍କର ଅଭ୍ୟର୍ଥନା ନିମନ୍ତେ ପ୍ରସ୍ତୁତ ହୋଇ ଆସିଛନ୍ତି । ମନ୍ତ୍ରୀ ରାତ୍ରୀଯାପନ କରିବେ ଜୟପୁରରେ - ସେଥିପାଇଁ ସର୍କିଟ୍ ହାଉସ୍, ପାନ୍ଥଶାଳାକୁ ରିଜର୍ଭ କରା ସରିଛି । ମନ୍ତ୍ରୀ ସନ୍ଧ୍ୟାବେଳେ ପୂର୍ତ୍ତ ବିଭାଗର ଡାକ ବଂଗଳାରେ ବିଶ୍ରାମ ନେବା ଅବସରରେ ପି.ଏ.କୁ ଡାକି କହିଲେ ରାଜବାଟୀରେ ଅତିଥିମାନଙ୍କ ପାଇଁ ଏକ ଗୃହ ଅଛି । ମୋର ସେଠାରେ ରହିବା ପାଇଁ ବନ୍ଦୋବସ୍ତ କର । ସେତେବେଳର ରାଜବାଟୀ ଆଉ ଏବେ ନାହିଁ । ରାଜବାଟୀ ବି କାହିଁକି ତାଙ୍କର ଯିବା ଆସିବାର ଖବର ରଖିବ । ପି.ଏ. ଭ୍ରୂକୁଞ୍ଚନ କଲେ । ଦଳୀୟ ନେତାମାନେ କହିଲେ ସାର୍ ପାହାଡ଼ ଉପରେ ଜଳସେଚନ ବିଭାଗର ବଂଗଳା ଅଛି । ସେଠାରେ ମୁଖ୍ୟମନ୍ତ୍ରୀ ଆସିଲେ ରୁହନ୍ତି, ଆପଣ ସେଠାରେ ଆଜି ରହିବେ, କାରଣ କାଲି ସକାଳୁ ଯେ ଆପଣ ମୁଖ୍ୟମନ୍ତ୍ରୀ ନହେବେ ଏ କଥା କିଏ କହିବ । ଖାନ୍‌ସାମାକୁ କୁହାଯାଇଛି । ଭୁବନେଶ୍ୱରରୁ ତାଲିମ୍‌ପ୍ରାପ୍ତ ଖାନ୍‌ସାମାକୁ ଅଣାଯାଇଛି । ମନ୍ତ୍ରୀ ହସିଦେଇ  କହିଲେ, ସେସବୁ ପରକଥା । ରାଜବାଟୀକୁ ଖବର ଦିଅ । ତାଙ୍କ ଗେଷ୍ଟ ହାଉସ୍ କଥା ଯିଏ ବୁଝୁଥିବେ ତାଙ୍କୁ କହିବ ମନ୍ତ୍ରୀ ସେଠାରେ ଆଜି ରାତ୍ରି ଯାପନ କରିବେ ।

ମନ୍ତ୍ରୀଙ୍କର ଦଳୀୟ କର୍ମକର୍ତ୍ତା ଏବଂ ଅନ୍ୟାନ୍ୟ କର୍ମଚାରୀମାନେ ତତ୍‌କ୍ଷଣାତ୍ ଆଜ୍ଞାପାଳନ କରିବା ପାଇଁ ଉଦ୍ୟମ ଆରମ୍ଭ କରିଦେଲେ । ଯେତେହେଲେ ସେ ଓଡ଼ିଶାର ଭାବି  ମୁଖ୍ୟମନ୍ତ୍ରୀ  । ମନ୍ତ୍ରୀ ଡାକ ବଂଗଳାରେ ବସି ଭାବୁଥିଲେ .. ଏଇ ରାଜନୀତିର କଥା... ସେ ସବୁ ତିରିଶ ବର୍ଷ ତଳର କଥା - ରାଜ ଉଆସରେ କର୍ମଚାରୀମାନଙ୍କର ପିଲାମାନଙ୍କର ଶିକ୍ଷାପାଇଁ  ରାଜ ପରିବାର ପରିଚାଳିତ ଏକ ସ୍କୁଲ୍ ଚାଲିଥାଏ । ଯୁବକ ନବକିଶୋର ଏକ ଗରିବ ପରିବାରରୁ ଆସି ଚାକିରି ଖଣ୍ଡିଏ ପାଇଁ ବାର ଦୁଆର ଶୁଙ୍ଘିପିଣ୍ଡା ହେଉଥାନ୍ତି -  ସଦ୍ୟ ବି.ଏ. ପାଶ୍ କରି ବାହାରିଥାନ୍ତି, ସେତେବେଳେ ଏହି ସ୍କୁଲ୍ ପାଇଁ ଶିକ୍ଷକ ଖୋଜା ଚାଲିଥାଏ - ଗଣିତ ମାଷ୍ଟ୍ର ରୂପେ ନବକିଶୋର ଅସ୍ଥାୟୀ ନିଯୁକ୍ତି ପାଇଲେ - ଦରମା ମାସକୁ ଶହେ ଟଙ୍କା ।

ରାଜପରିବାରର କେହି ଜୀବିତ ନଥିଲେ କଣ ହେଲା ତାଙ୍କର ପରିବାରର କେହି ନା କେହି ଏହି ଉଆସ କଥା ବୁଝୁଥାନ୍ତି - ରାଜା ବିକ୍ରମଦେବଙ୍କ ଦେହାନ୍ତ ପରେ ଆଉ କେହି ରହିଲେ ନାହିଁ... କେବଳ ହାତଗଣତି କେତେଜଣ କର୍ମଚାରୀଙ୍କ ବ୍ୟତୀତ । ସ୍କୁଲ୍‌ଟି ରାଜା ଆରମ୍ଭ କରିଥିଲେ ଏଣୁ ତାହା ଚାଲିଥିଲା । ଏଇ ସ୍କୁଲ୍‌ରୁ ଯାହା ଆୟ ସେଥିରୁ ଶିକ୍ଷକମାନେ ଦରମା ନେଉଥିଲେ ଓ ବାକିତକ ଉଆସର ରକ୍ଷଣାବେକ୍ଷଣ ପାଇଁ

ଖର୍ଚ୍ଚ ହେଉଥିଲା । ସେତେବେଳେ ରାଜବାଟୀରେ ଝିଅମାନେ ପରଦା ଭିତରେ ଥିଲେ, ବାହାରକୁ ବାହାରୁ ନଥିଲେ । ନବକିଶୋରଙ୍କୁ ନବର ଉଆସ ଭିତରେ ଘର ମଧ୍ୟ ଯୋଗାଇ ଦିଆଗଲା । କାରଣ ସେଇୟା ହିଁ ନିୟମ ଥିଲା । ସେହି ସ୍ତରକୁ ଲାଗିଥିଲା ଅତିଥିଶାଳା । ଯେଉଁଠି ରହୁଥିଲେ ରାଜାଙ୍କର ଅତିଥିମାନେ ଏବଂ ସେମାନଙ୍କୁ ରାଜକୀୟ ସମ୍ବର୍ଦ୍ଧନା ଦିଆଯାଉଥିଲା । ଏବେ ସେଇ ଅତିଥିଶାଳାର ଦାୟିତ୍ୱରେ ଅଛନ୍ତି ରତ୍ନାଦେବୀ । ରାଜପରିବାରର କେହି ହେବେ ନିଶ୍ଚୟ ।

ଅନେକ ଦିନ ଧରି ସେ ଅତିଥିଶାଳା କେବଳ ଏକ ସ୍ମାରକୀ ହୋଇ ପଡ଼ି ରହିଥିଲା । ହଠାତ୍ ମନ୍ତ୍ରୀ ରହିବେ ଶୁଣି ସମସ୍ତେ ଚଳଚଞ୍ଚଳ ହୋଇ ଉଠିଲେ । କିଏ କିଏ ଆଶ୍ଚର୍ଯ୍ୟର ଭାବ ପ୍ରକଟ କଲେ । ମନ୍ତ୍ରୀ ତାଙ୍କର ସର୍କିଟ୍ ହାଉସ୍, ଡାକବଂଗଳା ଛାଡ଼ି ଏଠି କାହିଁକି ରହିବେ, ହୁଏତ ରାଜବାଟୀ ଦେଖିବାକୁ ଇଚ୍ଛାଥିବ ନହେଲେ ରାଜପ୍ରାସାଦ ବିଷୟରେ କିଛି ଜାଣିବାକୁ ଥାଇପାରେ । ତେବେ ସେ ଯାହା ହେଉ ମନ୍ତ୍ରୀ ମହୋଦୟଙ୍କ ପାଇଁ ଯଥାବିଧି ଅତିଥିଶାଳାକୁ ପ୍ରସ୍ତୁତ କରି ରଖାଗଲା । ରତ୍ନାଦେବୀଙ୍କୁ ନିଦ ନାହିଁ । କେମିତି ମନ୍ତ୍ରୀ ମହୋଦୟ ଭଲରେ ଭଲରେ ବିଦା ହେବେ ସେଇୟା ହିଁ ତାଙ୍କର ଚିନ୍ତାର ବିଷୟ ଥିଲା ।

ବହୁ ଆଡ଼ମ୍ବର ସହକାରେ ମନ୍ତ୍ରୀ ବିଶ୍ରାମ ନେବା ପାଇଁ ରାଜବାଟୀରେ ପହଞ୍ଚିଲେ । ରାଜଉଆସର କର୍ମଚାରୀମାନେ ତାଙ୍କୁ ପାଛୋଟି ଆଣିଲେ । ଅତିଥିଶାଳାରେ ଭି.ଆଇ.ପି. ମାନଙ୍କ ପାଇଁ ମାତ୍ର ଦୁଇଟି ରୁମ୍ । ଗୋଟିକରେ ମନ୍ତ୍ରୀ ରହିଲେ, ଅନ୍ୟଟିରେ ତାଙ୍କର ପି.ଏ. । ଅନ୍ୟମାନେ ସବୁ ବଂଗଳାରେ ରହିଗଲେ ।

ମନ୍ତ୍ରୀ କିଛି ନିରୋଳା ମୁହୂର୍ତ୍ତର ସନ୍ଧାନରେ ଥିଲେ । ଏଇ ରାଜ ଉଆସ ସାଙ୍ଗରେ ତାଙ୍କର ସଂପର୍କ ଅନେକ ଦିନର । ସେସବୁ ଏବେ ମନେପଡ଼ିଲେ ତାଙ୍କ ଲୋମ ଟାଙ୍କୁରି ଉଠେ । କାହାର ଏକ ଅଜଣା ଆକର୍ଷଣରେ ସେ ହଠାତ୍ ସ୍ଥିର କଲେ ଏଇ ଉଆସରେ ରହିବେ ବୋଲି । ନିଜର ଆଦ୍ୟ ଜୀବନର ସ୍ମୃତି ତାଙ୍କର ମାନସ ପଟରେ ଜାଗ୍ରତ ହୋଇ ଉଠିଲା । ହଠାତ୍ ପାଟିରୁ ତାଙ୍କର ବାହାରି ଆସିଲା 'ଉର୍ବଶୀ...' ? 'ସାର୍, କାହାକୁ ଡାକିଲେ ସାର... ? ମୁଁ କଣ ଦେବି କି ?' ପାଖ ରୁମରୁ ପି.ଏ. ବାହାରି ଆସିଲେ । ମନ୍ତ୍ରୀ କହିଲେ ନାଇଁ କିଛି ନାହିଁ, ଆପଣମାନେ ସବୁ ଶୁଅନ୍ତୁ । କାଲି ସକାଳେ ଅନେକ କାମ ।

ରାତି ବଢ଼ିବାରେ ଲାଗିଲା । ଉଆସ ଭିତର ବଗିଚାର ଗାଈଗୋରୁମାନେ ବୋହଲି ବୋହଲି ଏକ ଭିନ୍ନ ସ୍ୱରରେ ଗୀତ ଗାଇବାକୁ ଲାଗିଲେ - କିଛି କିଛି

ହେନାଫୁଲର ବାସ୍ନା ତାଙ୍କ ଦେହ ମନ ଭିତରେ ଉତ୍ତେଜନା ସୃଷ୍ଟି କଲା । ସେ ସବୁ ଉର୍ବଶୀ ପାଇଁ । ଏବେ ସିଏ ବାହା ହୋଇ ତାର ସଂସାର କରିବଣି ।

ଉର୍ବଶୀ... । ସେତେବେଳର ଫ୍ରକ୍ ପିନ୍ଧା ଝିଅଟିଏ । ନବ କିଶୋର ତେଇଶି ବର୍ଷ ଯୁବକ... ଗଣିତ ଶିକ୍ଷକ । ଉର୍ବଶୀ ତାଙ୍କର ଛାତ୍ରୀ ଚଉଦ ବର୍ଷର । ଗଣିତରେ ଦୁର୍ବଳ ଥିବା ଉର୍ବଶୀ ବାରମ୍ବାର ଛୁଟି ଅସୁଥିଲା ତାଙ୍କ ପାଖକୁ । ଧୀରେ ଧୀରେ ନବକିଶୋର ନିଜ ଅଜାଣତରେ ତା ପାଖକୁ ଟାଣି ହୋଇ ଆସିଲେ । କିନ୍ତୁ ଉଭୟ ଉଭୟଙ୍କ ପାଖରେ ନିଜକୁ ଉନ୍ମୋଚିତ କରିପାରିଲେ ନାହିଁ । ତାପରେ ରାଜ ଉଆସ ଭିତରେ ଏ ସବୁ କାର୍ଯ୍ୟକୁ କେହି ପସନ୍ଦ କରିବେ ନାହିଁ । ଏମିତି ହୋଇପାରେ ନବକିଶୋରଙ୍କୁ ତାଙ୍କର ଚାକିରୀ ମଧ୍ୟ ହରାଇବାକୁ ପଡ଼ିପାରେ । ଉର୍ବଶୀ ମଧ୍ୟ ଏ ବିଷୟରେ କିଛି ମୁଁହ ଖୋଲି କହିପାରିନଥିଲା କାରଣ ତା ଚାରିପଟରେ ଥିଲା ସଂସ୍କାରର ଏକ ପ୍ରାଚୀର । ରାଜ ଉଆସର ଜଣେ ମୁଖିଆଙ୍କର କନ୍ୟା ହିସାବରେ ତାର ଚଳଣି ମଧ୍ୟ ସେଇମିତି ଥିଲା । ନବ କିଶୋର ଏକ ସାଧାରଣ ସ୍କୁଲ୍ ମାଷ୍ଟରଟିଏ । ଅଭାବି ପରିବାର । ତଥାପି ଦିନେ ସେଇ ଅଘଟଣଟି ଘଟିଥିଲା ।

ସେଦିନ ବାର ସମୟ ମନେ ନାହିଁ ।

ଅବଶ୍ୟ ଗୋଟିଏ ଛୁଟିଦିନ ନିଶ୍ଚୟ ।

ଉଆସର ଅଧିକାଂଶ କର୍ମଚାରୀ ସେଦିନ ଯାତ୍ରା ଦେଖି ଯାଇଥାନ୍ତି ।

ଉର୍ବଶୀର ପରିବାରବର୍ଗ ମଧ୍ୟ ସାମିଲ୍ ହୋଇଥାନ୍ତି ।

କେବଳ ଉର୍ବଶୀକୁ ଛାଡ଼ି ।

ପରୀକ୍ଷା ବୋଲି ସିଏ ଘରେ ଥାଇ ପଢ଼ାପଢ଼ି କରୁଥାଏ ।

ସହଜେ ଏମିତି ନବକିଶୋର ବାହାରକୁ ଯାଆନ୍ତି ନାହିଁ । ସେଦିନ ମଧ୍ୟ ଯାଇ ନଥିଲେ ।

ଉଆସର ଚାରିପଟେ ଥିବା ଦେବଦାରୁ ଗଛ ସବୁ ପବନରେ ହଲୁଥିଲେ । ଝାଉଁଗଛ ସବୁ ଅଜଣା ସଂଗୀତ ସୃଷ୍ଟି କରୁଥିଲେ । ଝିଂକାରୀର ଝିଁ ଝିଁ ଶବ୍ଦ ଯୁବକ ନବକିଶୋରଙ୍କ ମନ ଏବଂ ହୃଦୟରେ ଅଜଣା ପୁଲକ ଭରି ଦେଉଥିଲା । ତାଙ୍କ ଦୃଷ୍ଟି ପଡ଼ିଲା ଉର୍ବଶୀଙ୍କ ଘର ଉପରେ । ଝରକା ଦେଇ ଉର୍ବଶୀର ମୁହଁ ସ୍ପଷ୍ଟ ବାରି ହୋଇପଡୁଥିଲା । ହେଲେ ଉର୍ବଶୀ ମୁହଁ ବହି ଉପରେ ଥିଲା; ସେ ତନ୍ମୟ ହୋଇ ପଢୁଥିଲା ।

ସେ ଭାବିଲେ ଆଜି ହେଉଛି ଶୁଭ ମୁହୂର୍ତ୍ତ; ଏଇ ମୁହୂର୍ତ୍ତକୁ ହାତଛଡ଼ା କଲେ ଆଉ ହୁଏତ ନମିଳିପାରେ । କିନ୍ତୁ ଉର୍ବଶୀ ଯଦି ନାଁ କରିଦିଏ ? ଉର୍ବଶୀର ଉତ୍ତର କଥା ନଭାବି ସେ ଘର ଖୋଲି ପଦାକୁ ଆସିଲେ ଏବଂ ଧୀର ପଦକ୍ଷେପରେ ଉର୍ବଶୀର ଘର ଆଡ଼କୁ ମୁହାଁଇଲେ । ସେତେବେଳେ ତ ଆଉ ଇଲେକ୍ଟ୍ରିକ୍ ଆଲୁଅ ନଥାଏ । ଲଣ୍ଠନ ଲଗାଇ ପାଠ ପଢୁଥିଲା ସେ । ମନକୁ ମନ କିଛି ଗୋଟାଏ ଗୀତ ବୋଲି ଚାଲିଥାଏ - ପୁଣି କିଛି ସମୟ ଚୁପ୍‌ଚାପ୍ । ଏହି ସମୟରେ ହଠାତ୍ ପଛଆଡୁ ତାର ଆଖି ଦୁଇଟାକୁ ଚିପି ଧରିଲେ ନବକିଶୋର... କିଏ କିଏ ବୋଲି କହି ଚିତ୍କାର କରି ଘର କମ୍ପାଇଦେଲା ଉର୍ବଶୀ । ପାଟି ଶୁଣି ଦଉଡ଼ି ଆସିଲେ କର୍ମଚାରୀମାନେ । କିନ୍ତୁ ସେତେବେଳକୁ ନବକିଶୋର ଝାଉଁ ଜଙ୍ଗଲ ଭିତର ଦେଇ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ସ୍କୁଲ୍ ଚାକିରୀ ଛାଡ଼ି ବ୍ୟବସାୟ, ତାପରେ ପଞ୍ଚାୟତ ସମିତି ୱାର୍ଡ଼ମେମ୍ବର, ତାପରେ ସରପଞ୍ଚ, ତାପରେ ଏମ୍.ଏଲ.ଏ, ତାପରେ ମନ୍ତ୍ରୀ । ବେଶ୍ କିଛି ହାଡ଼ଭଙ୍ଗା ପରିଶ୍ରମ କରିବାକୁ ପଡ଼ିଛି ତାଙ୍କୁ । ହେଲେ ସେ ଏପର୍ଯ୍ୟନ୍ତ ଭୁଲି ପାରିନାହାନ୍ତି ସେ ଗୋଲାପ ଫୁଲର ମହକକୁ ଯାହାକି ଦୀର୍ଘଦିନ ଧରି ତାଙ୍କୁ ଅଜାଣତରେ ବାନ୍ଧି ରଖିଥିଲା । ଭୁଲି ପାରି ନାହାନ୍ତି ସେଇ ଲାଲ୍ ଟୁକୁଟୁକୁ ଓଠ ନେଇ ହସୁଥିବା କୁନିଝିଅ ଉର୍ବଶୀକୁ । କୁଆଡ଼େ ଥିବ ସିଏ ଏଇନେ,କାହା ସାଙ୍ଗରେ ଘର ବାନ୍ଧି ପିଲା ଛୁଆର ମାଆ ହୋଇ ସାରିବଣି - କେତେବେଳେ ସେ ଶୋଇପଡ଼ିଛନ୍ତି ସେ ନିଜେ ମଧ ଜାଣି ପାରି ନାହାନ୍ତି ।

ସକାଳର ସୂର୍ଯ୍ୟ କିରଣର ପହିଲି ସ୍ପର୍ଶରେ ତାଙ୍କର ନିଦ ଭାଙ୍ଗିଲା । ସେ ଦେଖିଲେ ତାଙ୍କର ଅଧସ୍ତନ କର୍ମୀମାନେ ଆସି ମୁଣ୍ଡ ନୁଆଁଇ ବାହାରେ ଟହଲ ମାରୁଛନ୍ତି । ମନ୍ତ୍ରୀ କେତେବେଳେ ଉଠିବେ..ରାଜଧାନୀରୁ ବାରମ୍ବାର ଖବର ଆସୁଛି - ହଠାତ୍ ପି.ଏ. ସାହେବ୍ ଆସି ନତମସ୍ତକ ହୋଇ ଠିଆ ହେଲେ ।

କଣ କିଛି ଖବର ? ଭଲ ନା ମନ୍ଦ ।

ସାର୍ ! ସକାଳୁ ରତ୍ନାଦେବୀ ଖବର ପଠାଇଛନ୍ତି ଆପଣ ରେଡ଼ିହେଲେ ସେ ସାକ୍ଷାତ୍ କରିବାକୁ ଆସିବେ ।

ଏଥର ମନ୍ତ୍ରୀ ମହାଶୟଙ୍କ ମୁହଁ ଫିକା ପଡ଼ିଗଲା... କଣ କିଛି କାମ ହୋଇପାରେ... 'ଆଚ୍ଛା ତାଙ୍କୁ କୁହ ଆସିବା ପାଇଁ ।'

ମନ୍ତ୍ରୀ ମହାଶୟ ତାଙ୍କ ରୁମ୍‌ରେ ଅପେକ୍ଷା କରିଛନ୍ତି, ଲମ୍ବା ଓଢ଼ଣା ଟାଣି ପ୍ରବେଶ କଲେ ରତ୍ନାଦେବୀ ।

'ବସନ୍ତୁ ବସନ୍ତୁ... କଣ କହି ଆପଣଙ୍କୁ ଧନ୍ୟବାଦ ଦେବି ମୁଁ ଭାଷା ଆଜି

ପାଉନି - ଆପଣଙ୍କୁ ଏବଂ ଆପଣଙ୍କ କର୍ମୀମାନଙ୍କୁ ଯାହାଙ୍କ ଆତିଥ୍ୟରେ ମୁଁ ଆଜି ତୃପ୍ତ - କୁହନ୍ତୁ ଆପଣଙ୍କ ପାଇଁ କଣ କରିପାରେ ?'

ରତ୍ନାଦେବୀ ଏଥର ସେଇ ନାଲି ଓଢ଼ଣା ଭିତରୁ ନିଜର ହାତ ପ୍ରସାରିତ କଲେ ଏବଂ ଧରିଥିବା ଗୋଟିଏ ଛୋଟିଆ ଡାଏରୀ ଏବଂ କଲମଟିଏ ମନ୍ତ୍ରୀଙ୍କ ହାତକୁ ବଢ଼ାଇ କହିଲେ 'ମୋର ଆଉ କିଛି ମାଗିବାର ନାହିଁ, ଏତକ ମୁଁ ସାଇତି ରଖିଥିଲି ବର୍ଷ ବର୍ଷ ଧରି ଯୁଗ ଯୁଗ ଧରି କେବଳ ଆପଣଙ୍କୁ ନିଜ ମନ ଭିତରେ ସାଇତି ରଖିବା ପାଇଁ - ଏବେ ଏହାର ଦରକାର ସରିଯାଇଛି - ଦୟାକରି ଏତକ ଗ୍ରହଣ କରନ୍ତୁ - ଆପଣ ସେଇ ରାତିରେ ମୋ ପଢ଼ାଘରୁ ଅନ୍ଧାର ରାତିରେ ତର ତର ହୋଇ ଚାଲିଯାଉଥିବା ବେଳେ ଏତକ ତଳେ ଖସି ପଡ଼ିଥିଲା... । ଦେଖନ୍ତୁ ତ ଦୀର୍ଘ ତିରିଶ ବର୍ଷ ପରେ ମଧ୍ୟ ମୁଁ କିପରି ଏହାକୁ ସାଇତି ରଖିଛି - ଦାଗଟିଏ ମଧ୍ୟ ଲାଗିବାକୁ ଦେଇନାହିଁ ।'

ସହସା ବଜ୍ରପାତ ହେଲାପରି ମନେ ହେଲା ନବକିଶୋରଙ୍କୁ । ସତେ ଯେପରି ଏଇମାତ୍ର କଳାହାଣ୍ଡିଆ ମେଘଟାଏ ମାଡ଼ିଆସି ଗର୍ଜି ଦେଇଯିବ... ନବକିଶୋର ସେଇ କଅଁଳିଆ ହାତଟିକୁ ଖୁବ୍ ଶକ୍ତ ଭାବରେ ଜାବୁଡ଼ି ଧରିଲେ ବେଶ୍ କିଛି ସମୟ ପାଇଁ... ଉର୍ବଶୀ ତମେ... ତମେ... ତାହେଲେ... ଓଃ ମୁଁ ପାଷାଣ୍ଡ ତୁମକୁ ନବୁଝିପାରି... ହେ ଭଗବାନ୍ ।

ବାହାରେ ଗାଡ଼ିମଟରର ଶବ୍ଦ - ପିଏ ସାହେବ୍ ବାରମ୍ବାର ମୃଦୁ ଶବ୍ଦରେ କବାଟରେ ଆଘାତ କରୁଥାନ୍ତି - ସାର... ଆମକୁ ଭୁବନେଶ୍ୱରରେ ପହଞ୍ଚିବାକୁ ପଡ଼ିବ ଲମ୍ବା ରାସ୍ତା... ସନ୍ଧ୍ୟା ୬ଟାରେ ମିଟିଂ... ସାର ସାତଟା ବେଳେ ହୁଏତ ଆପଣ ସାର... ।

ଓଃ... ମତେ କ୍ଷମା କରିଦିଅ ଉର୍ବଶୀ । ଉର୍ବଶୀ ସେତେବେଳକୁ ନିଜର ହାତକୁ ଖସାଇ ଭିତର ପଟଦେଇ ନିଜ କ୍ୱାର୍ଟର୍‌କୁ ଚାଲିଗଲାଣି ...

ଜୟପୁରରୁ ଭୁବନେଶ୍ୱର - କାହିଁ କେତେବାଟ ... ପୁଣି ଯଦି ହାତୀ କେବେ ତାଙ୍କ ମୁଣ୍ଡରେ ସୁନା କଳସୀ ଢାଳେ... ଡ୍ରାଇଭର୍‌କୁ କହିଲେ ଜଲ୍‌ଦି ଚଲ । ...ତେଣେ ମୁଖ୍ୟମନ୍ତ୍ରୀ ଅପେକ୍ଷାରେ ଥିବେ ଯେ... ?

# ଭାଗ

ଦିନସାରା ସୁଦାମର କାମରେ ମନ ଲାଗିଲା ନାହିଁ ।

କଣ ଗୋଟାଏ ଯେମିତି ଅଟକାଇ ଦେଉଥାଏ ।

କାଲି ରାତିରେ ସୁମତି ଯାହା କହିଲା,ସେଇଟା ତା ମୁଣ୍ଡରେ ସବାର ହୋଇଛି । ସେ ସୁମତି ଉପରେ ଭୀଷଣ ରାଗିଯାଇଥିଲା ।

ରାତି ସାରା ଭଲ ନିଦ ହେଲା ନାହିଁ ।

ମାଲିକ ବିରକ୍ତ ହେଉଛି ।

କହୁଛି 'କାମରେ ଯଦି ମନ ନ ଲାଗୁଛି ତେବେ ଘରକୁ ଚାଲିଯାଅ । ଏଠି ବସି ବସି ଦରମା ଦେବାକୁ କମ୍ପାନୀ ଖୋଲି ନାହିଁ ।' ସୁଦାମ କୌଣସି ଉତ୍ତର ଦେଇନାହିଁ । ମୁଣ୍ଡ ଭିତରେ କଙ୍କଡ଼ା ବିଛାମାନେ ସଲ ସଲ ହେଉଛନ୍ତି । କୌଣସି ସିଦ୍ଧାନ୍ତରେ ସେ ପହଞ୍ଚି ପାରିନାହିଁ । ସନ୍ଧ୍ୟାବେଳେ ସେ ଘରକୁ ଫେରିଲେ ସୁମତିକୁ ବୁଝାଇ ଦେବ, କହିବ ତା କଥା ରଖିବା ସମ୍ଭବ ନୁହେଁ । ଅନ୍ୟ କୌଣସି ଗ୍ରହଣଯୋଗ୍ୟ କଥା ବିଚାରକୁ ନିଆଯାଇପାରେ । ହଠାତ୍ ସୁମତିର ମୁଣ୍ଡରେ ଏ କଥାଟା କୁଟିଲା କେମିତି, ନିଶ୍ଚେ ତା ସରଳତାର ସୁଯୋଗ ନେଇ ପାଖ ପଡ଼ୋଶୀମାନେ ଏହି ଦୁର୍ବୁଦ୍ଧିଟାକୁ ତା ମୁଣ୍ଡରେ ପୂରାଇ ଦେଇଛନ୍ତି । ନହେଲେ ଗାଁ ଝିଅ ସିଏ... ତାମୁଣ୍ଡ ଭିତରେ ନିଶ୍ଚୟ କିଏ ଜଣେ ବିଷର ମଞ୍ଜି ବୁଣି ଦେଇଛି ।

ଗାଁ ଛାଡ଼ି ସହରକୁ ଆସିବାର ଅନେକ ଦିନ ହୋଇଗଲାଣି - ବାପାଙ୍କର ଗାଁ ଛାଡ଼ିବା ହେଲା ନାହିଁ - ତାଙ୍କ ଯୁକ୍ତି ଅକାଟ୍ୟ - ଗାଁ ମାଟି ତାଙ୍କର ମାଆ, ମାଆକୁ ଛାଡ଼ି ସେ ଯିବେ କୁଆଡ଼େ । ଏଠି ତାଙ୍କର ବାପା, ଜେଜେ ବାପା ସମସ୍ତେ ଯାଇଛନ୍ତି । ସେ ବି ଏଇଠି ଯିବେ । ଏଇଠି ତାଙ୍କର ପତ୍ନୀ ସୁଭଦ୍ରାଙ୍କ କାଳ ହୋଇଛି । ସେ କଥା ବି ତା ମନକୁ ଆନ୍ଦୋଳିତ କରେ । ପିଲାଟି ଦିନରୁ କେବେ ବି ଅବାଧ ହୋଇନି ସେ । ବାପାଙ୍କର କଥାକୁ କାଟିବା ତା ଶକ୍ତିର ବାହାରେ । ଖାଲି ପିଲାମାନଙ୍କର ସ୍ୱାର୍ଥ ଦୃଷ୍ଟିରୁ ସେ ଗାଁ ଛାଡ଼ି ଚାଲି ଆସିଲା । ଗାଁ ଜଳବାୟୁ ପରି ସହର ଜଳବାୟୁ ନୁହେଁ । ସହରର ଜଳବାୟୁ କୁଆଡ଼େ ଅତି ପ୍ରଦୂ୍ୟଷିତ । ଏଠି ଦେହ ମନ କୁଆଡ଼େ ମଇଳା ହୋଇଯାଏ । ବାପାଙ୍କ ମନା ସତ୍ତ୍ୱେ ସୁଦାମ ଘର ଛାଡ଼ି ଚାଲିଆସିଥିଲା ।

ସେଇଦିନଠାରୁ ସୁଦାମ ବହୁତ କମ ଗାଁକୁ ଯାଏ । ବାପାଙ୍କୁ ଅବଶ୍ୟ ପ୍ରତି ମାସରେ କିଛି କିଛି ପଇସା ପଠାଇ ଦିଏ । ଘରକୁ କିଛ କିଛି ଜିନିଷ ପଠାଏ । ଘରେ

ବାପା ଏକୁଟିଆ । ଦେଖା ଦେଖି କରିବାକୁ ହଳିଆଟିଏ ଘରେ ରୁହେ । ପାଖ ପଡ଼ିଶା ଘରୁ ରମା ଆସି ଦୁଇ ଓଳି ରୋଷେଇ କରି ଦେଇଯାଏ - ଝିଅ ନଥିବାରୁ ବାପା ତାକୁ ଝିଅ ପରି ଦେଖନ୍ତି - ରମା ମଧ୍ୟ ସୁଦାମ ଏବଂ ସୁମତିକୁ ନିଜର ଭାଇ ଭାଉଜ ପରି ଦେଖେ । ଜମିରୁ ଯାହା ଆଦାୟ ହୁଏ ବର୍ଷ ସାରା ଚଳିଯିବା ପାଇଁ କୌଣସି ଅସୁବିଧା ହୁଏ ନାହିଁ ।

ଲତିକା ଏବଂ ଶୋଭନ ତାଙ୍କର ପଡ଼ୋଶୀ । ସେମାନେ ମଧ୍ୟ ତାଙ୍କରି ସାଙ୍ଗରେ ଗାଁ ଛାଡ଼ି ଆସିଥିଲେ । ଶୋଭନ ଠିକାଦାରୀ କରେ । ଭଲ ଦୁଇପଇସା ରୋଜଗାର କରେ । ଘରେ ଟି.ଭି. ଫ୍ରିଜ୍ ସବୁ ରଖିଛି । ସପ୍ତାହକୁ ଥରେ ସେ ଏବଂ ତାର ପିଲାମାନେ ବାହାରକୁ ବୁଲିବା ପାଇଁ ଯାଆନ୍ତି । ଏବେ ନିକଟରେ ତାଙ୍କର ଗୋଟାଏ ମଟର ସାଇକେଲ କିଣା ହୋଇଛି । କାଲି ଲତିକା ତାଙ୍କ ଘରକୁ ବୁଲିବା ପାଇଁ ଆସିଥିଲା । କଥା ଛଳରେ ଲତିକା ସୁମତିକୁ କହିଦେଇଛି - ଗାଁର ସବୁ ଜମିବାଡ଼ି ବିକିଦେଇଛି । ସେ ମଧ୍ୟ ତାର ବାପା ମାଆଙ୍କୁ ପାଖକୁ ନେଇ ଆସିଛି - ଏଠି କୋଠା ଘର ତୋଳିବ । ମଟର ସାଇକେଲଟା ସେଇ ଟଙ୍କାରେ କିଣାହୋଇଛି । ଗାଁରେ କଣ କାମ ଯେ - ବାପା ମାଆ ହଇରାଣ ହେଉଥିଲେ, ତାଙ୍କର ଦେଖାଶୁଣା ପାଇଁ କେହି ନାହାଁନ୍ତି । ଲତିକାର ଏହି କଥା ଶୁଣିବା ପରେ ସୁମତିର ଭାବାନ୍ତର ହୋଇଛି । ସେଇଥିପାଇଁ ବୋଧେ ଏତେ କାଣ୍ଡ । ତା ପିଲାମାନେ ସପ୍ତାହର ସାତଦିନରେ ଭଲ କରି ଖାଇବାକୁ ମଧ୍ୟ ପାଉନାହାନ୍ତି । ଗାଁରେ ଏତେ ସମ୍ପତ୍ତିବାଡ଼ି ଥାଇ ଲାଭ କଣ ?

ରାତିରେ ଶୋଇଲାବେଳେ ସୁମତି ଏକଦମ୍ ଜିଦ୍ ଧରିଲା । ଗାଁରେ ଏତେ ଜମି ଥାଇ ଲାଭ କଣ । ମୋ ପିଲାଏ ତ ଭଲକରି ତିନିଓଳା ଖାଇବାକୁ ପାଉନାହାନ୍ତି - ମୋର ଶାଢ଼ୀ କିଣିବାକୁ ତମ ପାଖରେ ପଇସା ନାହିଁ, ପ୍ରତିମାସରେ ତମେ ବାପାଙ୍କ ପାଖକୁ ପଇସା ପଠାଅ, ସେ ତ ଏକୁଟିଆ ଲୋକ, ଏତେ ପଇସା ନେଇ ସେ କରିବେ କଣ ? ବରଂ ତମେ ଗୋଟାଏ କାମ କର ବାପାଙ୍କୁ କୁହ ସେ ଜମିବାଡ଼ି ସବୁ ବିକିଦେବେ । ଆମ ସାଙ୍ଗରେ ସହର ପଳାଇ ଆସିବେ । ସେଇ ଟଙ୍କାରେ ଆମେ ଏଠି ଜମି କିଣି ଦୁଇ ବଖରା ଘର କରିପାରିବା - ପିଲାମାନେ ମୁଣ୍ଡ ଗୁଞ୍ଜିବା ପାଇଁ ସ୍ଥାନଟିଏ ପାଇ ପାରିବେ ।

ହଠାତ୍ ସୁମତି ମୁହଁରୁ ଏ ଭଳିଆ ପ୍ରସ୍ତାବକୁ ସେ ଗ୍ରହଣ କରିପାରିନଥିଲା । ସୁମତି ଭଲ କରି ଜାଣିଥିଲା ଯେ ବାପା ଏ ପ୍ରସ୍ତାବରେ କେବେହେଲେ ସମ୍ମତି ପ୍ରଦାନ କରିବେ ନାହିଁ କାରଣ ଗାଁକୁ ସେ ଖୁବ୍ ଭଲ ପାଆନ୍ତି । ରାଗରେ ଚିହିଁକି ଉଠିଥିଲା ସୁଦାମ

'କଣ ତମର ମୁଣ୍ଡ ଫୁଣ୍ଡ ସବୁ ଖରାପ ହୋଇଗଲାଣି ନା କଣ , ବାହାର ଲୋକଙ୍କ କଥାରେ ପଡ଼ି ତମେ ନିଜ ବୁଦ୍ଧି ହରାଇ ବସିଛ, ବରଂ ଯାହା ଅଛି ଆମେ ଚଳିଯାଉଛୁ । ଆମର ଏତେ ଲୋଭ କରିବା ଦରକାର ନାହିଁ । ବାପା ଅମକୁ ମଣିଷ କରିଛନ୍ତି । ଆମର ତାଙ୍କ ପ୍ରତି କିଛି କର୍ତ୍ତବ୍ୟ ଅଛି ନା ନାହିଁ । ଏ ସବୁ ତମର ଭାବିବା ଦରକାର । ବାପାଙ୍କର ବୟସ ହେଲାଣି, ରାଗିଗଲେ ସେ ନିଜେ ଘରୁ ବାହାରି ଯିବେ .... । ଜମିବାଡ଼ିକୁ ବିକ୍ରୀ କରିବା ପାଇଁ ସେ କେବେହେଲେ ଦେବେ ନାହିଁ । ମୁଁ ଯଦି ପାଠ ଦୁଇପଦ ପଢ଼ିନଥାନ୍ତି ତେବେ ସେଇ ଗାଁରେ ରହି ଚାଷବାସ କରିଥାନ୍ତି । ତମେ ମଧ ଗାଁରେ ହିଁ ରହିଥାଆନ୍ତ । ବାପାଙ୍କର ମନରେ କଷ୍ଟଦେବା କଣ ଠିକ୍ ହେବ । ତମର ଯଦି ନିହାତି ଅସୁବିଧା ତାହେଲେ ଚାଲ ପୁଣି ଗାଁକୁ ଫେରିଯିବା, ମୁଁ ଗାଁରୁ ସହରକୁ ଯିବା ଆସିବା କରିବି ।'

ସୁମତି କୌଣସି କଥା ଶୁଣିବା ପାଇଁ ପ୍ରସ୍ତୁତ ନଥିଲା । କହିଲା 'ମୋ ପିଲାଏ ଗାଁରେ ରହି ସଢ଼ନ୍ତୁ ଏ କଥା ମୁଁ ଚାହେଁନା । ସେମାନଙ୍କର ଦୃଷ୍ଟିରେ ଚଳଣୀରେ ପରିବର୍ତ୍ତନ ଆଣିବା ପାଇଁ ଆମେ ଏଠିକୁ ଆସିଛୁ । ବାପା ଏଠିକୁ ଆସିଲେ କୌଣସି ଅସୁବିଧା ହେବ ନାହିଁ । ଏଠି ଚିକିତ୍ସା ପାଇଁ ସବୁ ସୁବିଧା ଅଛି । ପାଖରେ ଡାକ୍ତରଖାନା, ଡାକ୍ତରମାନେ ଆସି ଘରେ ମଧ ଦେଖୁଛନ୍ତି । ତାପରେ ତମେ ନିଜେ କହୁନ ହଳିଆର ରୀତିନୀତି ସବୁ ବଦଳି ଗଲାଣି । ଲୋକେ ଗାଁରୁ ସହରକୁ ଆସୁଛନ୍ତି ନିଜର ପରିବାରର ଭରଣ ପୋଷଣ ପାଇଁ । ବର୍ଷ ଦୁଇବର୍ଷ ଭିତରେ ଆମ ଗାଁର ଲୋକେ ସହରକୁ ଆସି କେତେ ଉନ୍ନତି କରିଗଲେଣି ଅଥଚ ଆମେ ଯାହା ଥିଲୁ ସେଇଯା । ତମେ ଯଦି ବାପାଙ୍କୁ କହିପାରିବନି ତେବେ ମୁଁ କହିବି ।'

ସୁଦାମ ଦେଖିଲା ସୁମତି ଆଉ କିଛି ଶୁଣିବା ଅବସ୍ଥାରେ ନାହିଁ । ସେଦିନ ରାତିରେ ଆଉ ତାକୁ ନିଦ ହେଲା ନାହିଁ । ସକାଳୁ ସକାଳୁ ସେ କାମକୁ ବାହାରି ଆସିଥିଲା ।

ଅଫିସ ଫେରନ୍ତା ବାଟସାରା ସୁଦାମ ସୁମତି କଥା ହିଁ ଭାବି ହେଉଥିଲା । ବାପାଙ୍କ ପାଖରେ ପ୍ରସ୍ତାବ କେମିତି ପକାଇବ ସେଇ କଥା ଭାବି ଥଳକୂଳ ପାଉନଥିଲା । ଯଦି କଥା କହୁ କହୁ ଅନ୍ୟ ବାଟରେ ଯାଏ ତେବେ ଅବସ୍ଥା ଅସମ୍ଭାଳ ହେବ । ଅବଶ୍ୟ ଏ କଥା ସତ ଯେ ଏବେ ତାଙ୍କର ଗାଁର କେତେ ଲୋକ ସହରାଭିମୁଖୀ ହେଲେଣି । ଲୋକମାନଙ୍କ ଚାଲିଚଳଣ ଆଚାର ବ୍ୟବହାର ସବୁରେ ପରିବର୍ତ୍ତନ ଦେଖା ଦେଇଛି । କିନ୍ତୁ ବାପା ହେଲେ ପୁରୁଣା କାଳର ଲୋକ । ତାଙ୍କ ଭିତରେ ଏ ସହରୀ

ସଭ୍ୟତା ପ୍ରବେଶ କରି ନାହିଁ । ସାଧା ଧୋତିଟିଏ ଏବଂ ଗଞ୍ଜିଟିଏ ପିନ୍ଧି ସେ ଜୀବନସାରା କଟେଇ ଦେଲେଣି । ଆଉ ଏମିତି କେତେଟା ବର୍ଷ କି ? ସହଜରେ ତ ବ୍ଲଡ଼ପ୍ରେସର ଅଛି । ଆଉ ଯଦି ରାଗିଯାଆନ୍ତି ଚ କଣ ନା କଣ ହୋଇଯିବ ।

ରାତିରେ ଖାଇଲା ବେଳେ ସୁଦାମ କହିଲା 'ଯଦିଓ ଘଟଣାଟା ଏତେ ସହଜ ନୁହେଁ ତେବେ ବାପାଙ୍କ କାନରେ କଥାଟା ପଡୁ, ତାପରେ ଗାଁରେ ଅନ୍ୟମାନଙ୍କ ସାଙ୍ଗରେ କଥାବାର୍ତ୍ତା ହେବାକୁ ପଡ଼ିବ, ନରିଦାଦା, ଘନ ମଉସା ସବୁ ଅଛନ୍ତି ତାଙ୍କର ପରାମର୍ଶ ନେଇ ଯାହା କରିବା । କିନ୍ତୁ ହଠାତ୍ ତ ଜମିବାଡ଼ି ସବୁ ବିକ୍ରୀ ହୋଇପାରିବ ନାହିଁ, ଏଥିପାଇଁ ସମୟ ଦରକାର ।' ସୁମତୀ କହିଲା 'ତାହେଲେ ଡେରି କରିବା ନାହିଁ - କାଲି ସକାଳୁ ହିଁ ବାହାରି ପଡ଼ିବା । ଏଇ ଆଳରେ ଗାଁରେ ଦୁଇ ତିନିଦିନ ରହି ଆସିବା ।'

ଗାଁକୁ ଯିବା କଥା ଶୁଣି ପିଲା ଦୁଇଟା ଖୁସିରେ ନାଚି ଉଠିଲେ । ଜେଜେ ବାପା ଜେଜେ ବାପା ବୋଲି ଚିତ୍କାର କଲେ । ବହୁଦିନ ପରେ ସେମାନେ ଗାଁକୁ ଯିବେ । ଯା ଭିତରେ ଗାଁରେ କିଛି କିଛି ପରିବର୍ତ୍ତନ ହୋଇଥିବ । ବାପା ଲେଖିଥିଲେ ଏଥର ଫସଲ ଭଲ ହେଇଛି । ଗାଁରେ ଚାଷୀମାନେ ବିଶେଷ ଭାବରେ ଇନ୍ଦ୍ରଙ୍କ ଉପରେ ନିର୍ଭର କରନ୍ତି । କେଉଁ ବର୍ଷ ଭଲ ଫସଲ ହୁଏ ତ କେଉଁ ବର୍ଷ ମରୁଡ଼ି । ସେଥିପାଇଁ ଆଗରୁ ପ୍ରସ୍ତୁତ ହୋଇ ରହିବା କଥା । ପିଲା ଦୁଇଟା ବାରମ୍ବାର ବାପାଙ୍କୁ ପଚାରୁଥିଲେ ଏଥର ଗଛରେ ବହୁତ ଆମ୍ବ ହୋଇଥିବ ନା... ପୋଖରୀରେ ମାଛ ଖେଳୁଥିବେ ନା... ଆଉ ଆମର ଗାଈ ବଳଦ ସେମିତି ହମା ରଡ଼ି ଛାଡୁଥିବେ ନା ? ସୁଦାମ କହୁଥାଏ.... 'ସବୁ ଥିବ, ସବୁ ମିଳିବ... ତମେ ଚାଲନା.... ।'

ବସ୍‌ଷ୍ଟାଣ୍ଡରେ ପହଞ୍ଚିଲା ବେଳକୁ ଦିନ ଦଶଟା । ଗାଁରେ ପହଞ୍ଚିଲା ବେଳକୁ ଦୁଇଟା ବାଜିବ । କିଛି ବାଟ ଚାଲିବାକୁ ପଡ଼ିବ । କାରଣ ଗାଁ ଭିତରକୁ ଅଣ ଚଉଡ଼ା ରାସ୍ତା । ବାଟ ସାରା ସୁଦାମ ଚିନ୍ତାରେ ବୁଡ଼ି ରହିଥାଏ । ରାସ୍ତାର ଦୁଇ ପାଖରେ ଧାନ ବିଲ । ଧାନ ସବୁ ପବନରେ ଦୋଳି ଖେଳୁଥାନ୍ତି । ମଝିରେ ମଝିରେ ରାସ୍ତା ଅଣ ଓସାରିଆ । ବସ ଚାଲିଲାବେଳେ ବାଁ ଡାହାଣ ହେଉଥାଏ । ଲୋକମାନେ ତାରି ଭିତରେ ଠିଆ ହୋଇ ପରସ୍ପର ପରସ୍ପର ସହିତ ଧକ୍କା ଖାଉଥାନ୍ତି - କାରଣ ଦିନ ସାରା ସେଇ ଗୋଟାଏ ବସ ଗାଁକୁ ଥାଏ । ପୁଣି ଯାଇ ତାର ପରଦିନ ସେଇ ବସ୍ ଗାଁରୁ ଫେରେ । ପିଲା ଦୁଇଟା ସୁମତିକୁ କଲବଲ କରିଦେଉଥାନ୍ତି.... ଏବେ ଘରେ କିଏ ଥିବ, ସେମାନେ କାହା ସାଙ୍ଗରେ ଖେଳିବେ.... ଇତ୍ୟାଦି ଇତ୍ୟାଦି ।

ପିଲାଙ୍କ ପାଟି ଶୁଣି ଭିତର ଘରୁ ଦଉଡ଼ି ଆସିଲା ରମା - ବାପା ସେତେବେଳେ

ବାହାର ଘରେ ବିଶ୍ରାମ କରୁଥିଲେ । ପିଲା ଦୁଇଟା ଜେଜେ ଜେଜେ ବୋଲି ଚିତ୍କାର କରି ତାଙ୍କ କୋଳ ଉପରକୁ ଡେଇଁ ପଡ଼ିଲେ - ଓଃ ବିପ୍ରଚରଣଙ୍କର ଆନନ୍ଦ ଦେଖେ କିଏ । ଦିନସାରା ପରିଶ୍ରମ କରି ଘରକୁ ଫେରିଥିଲେ । ପିଲା ଦୁଇଟାଙ୍କୁ ଦେଖି ତାଙ୍କର ମନ ଆନନ୍ଦରେ କୁରୁଳି ଉଠିଲା - 'ଆରେ ସୁଦାମ ମା ସୁମତି, ଆଗରୁ ଟିକିଏ ଖବର ଦେଇନି ମୁଁ ଯାଇ ତମକୁ ବସଷ୍ଟାଣ୍ଡରୁ ନେଇ ଆସିଥାନ୍ତି ।' 'ନାଇଁ ବାପା ପିଲାଙ୍କ ସ୍କୁଲ ଛୁଟି - ଭାବିଲି ଯାଏ ଗାଁ ଆଡ଼େ ବୁଲି ଆସେ - ତମ ସାଙ୍ଗରେ ଅନେକ ଦିନ ହେଲା ଦେଖା ହୋଇନି - ସୁମତି ମଧ୍ୟ ବ୍ୟସ୍ତ ହେଲା ।' 'ହଉ ହେଲା ହେଲା, ଏବେ ଯାଇ ପୋଖରୀରେ ଗୋଡ଼ ହାତ ଧୁଅ, ଡ୍ରେସ ପଟା ବଦଳାଅ.... କଣ ସବୁ ସକାଳେ ଖାଇ ଆସିଥିବ - ନାତି ଟୋକା ଦୁଇଟା କଣ ସବୁ ଖାଇ ଆସିଥିବେ । ଆରେ ରମା.... କଣ ସବୁ କଲୁଣି ଆଗେ ପିଲା ଦୁଇଟାଙ୍କୁ ଦେଇ ଦେ ତ ?' ଏଇ ହେଲା ରକ୍ତର ସମ୍ପର୍କ - କେତେ ନିବିଡ଼... କେତେ ଆନନ୍ଦ ଦାୟକ । ସୁଦାମ କହିଲା...'ତମେ ବ୍ୟସ୍ତ ହୁଅନି ଜମା... ଆମେ ସାଙ୍ଗ ହୋଇ ଖାଇବା । ପିଲାଙ୍କ କଥା ରମା ବୁଝିବ । ଏଇ ଦେଖୁନ ପିଲା ଦୁଇଟି ଯାଇ ଦାଣ୍ଡ ଦୁଆରେ ଖେଳିଲେଣି ।' ସୁମତି ପାଟିକଲା 'ଆସ୍ତେ ଦଉଡ଼ - ପଡ଼ିଯିବ ଯେ ।'

ଖାଇବା ପିଇବା ସରିଲା ବେଳକୁ ଦିନ ତିନିଟା ହେଲାଣି । ରମା ତାର ଭାଉଜ ସାଙ୍ଗରେ ଗପର ପେଡ଼ି ମେଲି ଦେଇଥାଏ - ବାପା ବାହାରକୁ ଚାଲିଗଲେଣି । ସୁଦାମ କିଛିକ୍ଷଣ ବିଶ୍ରାମ ନେଇ ଗାଁ ଭିତରକୁ ଚାଲିଲା । ବାଟରେ ପିଲାଦିନ ବନ୍ଧୁମାନେ ଦେଖାହେଲେ । ସୁଦାମର ଖବର ସବୁ ପଚାରିଲେ । ସୁଦାମ ସେମାନଙ୍କ ସାଙ୍ଗରେ କିଛି ସମୟ କଟାଇଲା । ନରି ଦାଦା, ଘନ ମଉସାଙ୍କ ଘର ଆଡ଼େ ଗଲା । ସେମାନଙ୍କ ପାଖରେ କଥା ଛଳରେ ଏ କଥାଟି ମଧ୍ୟ ପକାଇ ଦେଲା । ସେମାନେ କହିଲେ,'ଏହା ଉତ୍ତମ କଥା... ପୁଅ ପାଖରେ ବାପା ରହିବ ଏଥିରେ ବିପ୍ରଚରଣ ରାଜି ହେବନି କାହିଁକି... ତା ପରେ ବୟସ କୋଉ ଅପେକ୍ଷା କରିଛି ଯେ... ବୁଢ଼ା ବୟସରେ ଯଦି ବୋହୂ ସେବା ପାଇଲା ସେଥିରେ ତାର ଖୁସି ହେବାର କଥା । କିନ୍ତୁ ବିପ୍ରଚରଣ ଏକବାଗିଆ ଲୋକ । ତମେ ପୁଅ ତାର ମନ ନେଇ କଥା ହେବ । ଏ ଗାଁ ଘର ମଧ୍ୟ ପୁରୁଣା ହୋଇଗଲାଣି । ଅନେକ ଦିନ ହେଲା ମରାମତି ହୋଇନାହିଁ । ଘରକୁ ସେ ଏକୁଟିଆ, ତେଣୁ ତମର ପ୍ରସ୍ତାବଟି ମନ୍ଦ ନୁହେଁ । ଦରକାର ପଡ଼ିଲେ ଆମକୁ କହିବ ଆମେ ମଧ୍ୟ ତାକୁ ବୁଝାଇବୁ ।'

ଗାଁ ଉପରେ ସୂର୍ଯ୍ୟଙ୍କର କିରଣ ମଳିନ ପଡ଼ି ଆସିଲାଣି । ହଳୁଆମାନେ ହଳ ଲଙ୍ଗଳ ଧରି ଫେରି ଆସିଲେଣି । ପକ୍ଷୀମାନଙ୍କର ଚେଁ ଚେଁଇୟା ଶବ୍ଦ ଶୁଭୁଛି । ସେମାନେ ନୀଡ଼କୁ ଫେରୁଛନ୍ତି । ଗାଈଆଳ ଟୋକା ଗାଈ ମାନଙ୍କୁ ଅଡ଼ାଇ ଫେରୁଛି - କେମିତି

ଗୋଟାଏ ସୁଲୁ ସୁଲିଆ ପବନ ବହୁଛି - ବରଗଛ, ଓସ୍ତ ଗଛର ଫଳ ଦୋହଲୁଛି । ସନ୍ଧ୍ୟାବେଳେ ଗାଁ ଦାଣ୍ଡ ନିଶୁନ ହୋଇଯାଏ । କେବଳ ଭାଗବତ ଟୁଙ୍ଗୀରେ ଭିଡ଼ ଜମେ । ନହେଲେ ଗାଁବାସୀ ପ୍ରାୟ ସନ୍ଧ୍ୟାବେଳେ ଖାଇ ଦେଇ ଶୋଇପଡ଼ନ୍ତି କାରଣ ସେମାନଙ୍କୁ ପୁଣି ସୂର୍ଯ୍ୟୋଦୟ ପୂର୍ବରୁ ଉଠିବାକୁ ପଡ଼ିବ ।

ସୁମତି ରୋଷେଇ ଶାଳରେ ବ୍ୟସ୍ତ ଥିଲା । ବାପା ଫେରିବା ଦେଖି ଚାହା ପାଣିର ବନ୍ଦୋବସ୍ତ କଲା । ସନ୍ଧ୍ୟାବେଳେ ଶ୍ୱଶୁରଙ୍କର ଚାହା ଖାଇବା ଅଭ୍ୟାସ । ସୁଦାମ ବାପାଙ୍କ ସାଙ୍ଗରେ ବାହାର ବାରଣ୍ଡାରେ ସୁଖ ଦୁଃଖ ହେଲା । ବିପ୍ରଚରଣ କହିଲେ, ଷାଠିଏ ଟପିଗଲାଣି - ଆଉ କେଇଟା ଦିନ ମୋ ଆୟୁଷ । ତୁ ଓ ପିଲାମାନେ ଗାଁକୁ ଆସିଗଲେ ମତେ ଆଉ ଚିନ୍ତା ରହିବନି - ଏଠି ମଧ ଆସନ୍ତା ବର୍ଷ ମାଇନର ସ୍କୁଲକୁ ହାଇସ୍କୁଲରେ ପରିଣତ କରାଯାଉଛି - ସରକାର ଗ୍ରାମାଞ୍ଚଳର ଉନ୍ନତି ନିମନ୍ତେ ଚେଷ୍ଟିତ ହେଲେଣି ।

ସୁଦାମ ହଠାତ୍ କିଛି ଉତ୍ତର ଦେଲାନାହିଁ । ଭାବିଲା ବର୍ତ୍ତମାନ କହିଲେ ବିଶେଷ କିଛି ଫଳପ୍ରଦ ହେବ ନାହିଁ । ରାତିରେ ଖାଇଲାବେଳେ କଥାଟା ପକାଇବ ।

ଧୀରେ ଧୀରେ ଗାଁ ଉପରେ ସନ୍ଧ୍ୟା ନଇଁ ଆସିଲା । ଘରେ ଘରେ ଲଣ୍ଠନ ଜଳିଲା - ଯିଏ ଯାହାର ଘର ଭିତରକୁ ଚାଲିଗଲେ - ତାଟି କବାଟ ପଡ଼ିଗଲା ।

ରାତିରେ ଖାଇଲାବେଳେ ସୁଦାମ କଥାଟାକୁ ଆରମ୍ଭ କରିଦେଲା । 'ବାପା ମୁଁ କଣ କହୁଥିଲି କି ?' ବିପ୍ରଚରଣ ବିଶେଷ ଆଗ୍ରହ ପ୍ରକାଶ କଲେ - 'କଣ କହୁନୁ ସୁଦାମ... ଗାଁ ଜମି କଥା ପଚାରୁଥିଲୁ କି - ଏଥର ଫସଲ ଭଲ ହୋଇଛି... ତୋର ଟଙ୍କା ପଠାଇବା ଦରକାର ପଡ଼ିନପାରେ... ତୁ ସେଇ ଟଙ୍କାରେ ବୋହୂ ପାଇଁ ଶାଢ଼ୀ, ପିଲାଙ୍କ ପାଇଁ ନୂଆ ଡ୍ରେସ କିଣିଦେବୁ... ପରେ ଦରକାର ହେଲେ ମୁଁ ଲେଖିବି - ତାପରେ ମୁଁ ତ ଏକୁଟିଆ ପଇସା ମୋର କଣ ହେବ ଯେ... ଏ ସବୁ ତ ତୁ ଏବଂ ତୋର ପିଲାମାନଙ୍କ ପାଇଁ ।' 'ନାଁ ବାପା ମୁଁ କଣ କହୁଥିଲି କି - ଏ ଜମିବାଡ଼ି କଥା, ଚାଷବାସ କଥା, ଘର କଥା ତମେ ବା ଆଉ କେତେଦିନ ବୁଝିବ - ତମର ମଧ ବୟସ ହେଲାଜୀବନ ସଉଦାଣି - ପରିଶ୍ରମ କରି କରି ତମେ ଥକି ଗଲଣି - ଆଉ ଖଟିବା ଦରକାର କଣ ଯେ... ମୁଁ କଣ କହୁଥିଲି ଏ ପିଲା ଦୁଇଟା ଖାଲି ଜେଜେ ଜେଜେ ହେଉଛନ୍ତି, ସୁମତି ମତେ ଅନେକ ଥର

କହିଲାଣି ।' ଏଥର ବିପ୍ରଚରଣ ଚିଡ଼ି ଉଠିଲେ 'କହିଲେ ଜଲ୍‌ଦି ଜଲ୍‌ଦି କହୁନୁ କଥାଟା କଣ, ଏତେ ଗୌରଚନ୍ଦ୍ରିକା କାହିଁକି ?' ସୁଦାମ ନିଜ ଭିତରେ ସାହସ ସଂଗ୍ରହ କରି କହିଲା... 'ଏ ସବୁ ଜମିବାଡ଼ି ବିକିଦେଇ ତମେ ଆମ ସଙ୍ଗେ ସହର ଚାଲିଗଲେ କେମିତି ହୁଅନ୍ତା । ଯାହା ପଇସା ମିଳନ୍ତା ସେଥିରେ ଆମେ ସହରରେ ଛୋଟିଆ ଘରଟିଏ

କରନ୍ତେ - ଯାହାର ଦେଖାଚାହାଁ ତମେ କରନ୍ତ । ଆଉ ସକାଳୁ ଉଠି ବିଲକୁ ଯିବା ଦରକାର ପଡ଼ିବ ନାହିଁ । ବଳଦ ହଳିଆଙ୍କ ଉପରେ ଅଯଥା ବିରକ୍ତ ହେବାକୁ ପଡ଼ିବ ନାହିଁ । ତାଙ୍କର ଦାନାପାଣି ଆଣିବାକୁ ଯିବାକୁ ପଡ଼ିବ ନାହିଁ । ତାପରେ ତମର ଦେହ ପା ଦେଖିବାକୁ ଏଠି କିଏ ଅଛି ଯେ... ସେଠି ତ ଫୋନ୍ କରିଦେଲେ ଡାକ୍ତର ଆସି ପହଞ୍ଚିଯିବେ ।'

ହଠାତ୍ ନିର୍ମଳ ଆକାଶରେ ମେଘ ଗର୍ଜନ କଲାପରି ଗର୍ଜି ଉଠିଲେ ବିପ୍ରଚରଣ ସାମନ୍ତରାୟ... ଖାଇବା ଥାଳି ଉପରୁ ଚିତ୍କାର କଲେ, ' କଣ କହିଲୁ ସୁଦାମ... ତୋତେ କଣ ଏଇ ଶିକ୍ଷା ମୁଁ ଦେଇଥିଲି ଯେ ତୁ ମୋ ମାଟି ମା'କୁ ପଦାଘାତ କରିବୁ, ଆଉ ମୁଁ ତୋ ସାଙ୍ଗରେ ସହର ଯିବି... ମୋର କଣ ହେବ ସେ ସବୁ ଡାକ୍ତରୀ ଚିକିତ୍ସା, କଣ ହେବ ମୋର କୋଠାଘର... କଣ ହେବ ମୋର ଗାଡ଼ି ଘୋଡ଼ା... ଶୁଖିଯାଇ ଥୁଣ୍ଟା ପାଲଟି ଥିବା ଗଛଟାଏ ମୁଁ । କେତେବେଳେ ଝଡ଼ିପଡ଼ି ମାଟିରେ ଶୋଇଯିବି କିଏ ଜାଣେ । ମୁଁ ଜାଣେ ମୋ ପାଇଁ ସାରା ଗାଁ ଭାଇ ଅଛନ୍ତି । ଦଉଡ଼ି ଆସିବେ ସେମାନେ, ଶୂନ୍ୟେ ଶୂନ୍ୟେ ଟେକି ନେଇଯିବେ ସେ ଗାଁ ମଶାଣୀକୁ ଯେଉଁଠି ଜଳିଛନ୍ତି ତୋର ଜେଜେ ବାପା, ତୋର ଜେଜେମା, ଆଉ ତୋର ବୋଉ । ଏବେ ମଧ ତୋ ବୋଉ ମୋତେ ହାତ ଠାରି ଡାକୁଛି - ଖାଲି ମୁଁ ଯାଇ ପାରୁନାହିଁ । ସମୟ ମତେ ଧରି ବାନ୍ଧିରଖିଛି ଆଉ ଯେତିକି ଦିନ ବଂଚିବି ଅନ୍ତତଃ ସେତିକି ଦିନ ଏ ମା'ର ସେବା କରିଚାଲେ । ମୋ ଅନ୍ତେ ତୋ ଛଡ଼ା ଆଉ କିଏ ଅଛି ଏ ସମ୍ପତ୍ତି ଭୋଗ କରିବାକୁ ? ତୁ ଚାହିଁଲେ ସେତେବେଳେ ଏ ସମ୍ପତ୍ତି ବିକି ଭାଙ୍ଗି ଇମାରତ ତୋଳିପାରୁ କିନ୍ତୁ ମୋ ଜୀବଦ୍ଦଶାରେ ନୁହେଁ - କସ୍ମିନ କାଳେ ନୁହେଁ... ଏଠି ମୁଁ ବନ୍ଧା.... ମୋ ବାପା ମାଆର ପ୍ରେମରେ ବନ୍ଧା । ତୋର ବୋଉର ପ୍ରେମରେ ବନ୍ଧା ଯେଉଁଠୁ ମୁକୁଳିବାର ମୋର ଉପାୟ ନାହିଁ... ମୁଁ ଜାଣେ ଏଇଟା ତୋର ବୁଦ୍ଧି ନୁହେଁ ମୋ ପୁଅର ବୁଦ୍ଧି ନୁହେଁ, ତୁ ନିଶ୍ଚେ କାହାର କୁମନ୍ତ୍ରଣାରେ ମତେ ତାଗିଦ୍ କରିବାକୁ ଆସିଛୁ - ତେବେ ଶୁଣ୍ ଏଇ ମୁହୂର୍ତ୍ତରୁ ମୁଁ ଏ ଘରଛାଡ଼ି ଚାଲିଯାଉଛି.... ତୋର ଯାହା ଇଚ୍ଛା ହେଉଛି ତାହା କର....' ହଠାତ୍ ପ୍ରଚଣ୍ଡ ଶବ୍ଦ କରି ବାରି ଦୁଆର ଖୋଲିଗଲା..... ଖଟ ଖଟ ଶବ୍ଦ କରି ନିଜର ସାହାବାଡ଼ି ଖଣ୍ଡକ ଧରି ଅନ୍ଧାର ରାତିରେ ବିପ୍ରଚରଣ ଘରୁ ବାହାରି ଚାଲିଗଲେ... ଭାତ ଥାଳିରେ ଭାତ ସେମିତି ବନ୍ଧାହୋଇ ରହିଲା.... ।

ରାତି ଗଭୀରରୁ ଗଭୀରତର ହେଉଥିଲା.... ହଠାତ୍ ଏମିତି ଗୋଟାଏ ସାଂଘାତିକ ପରିସ୍ଥିତି ସୃଷ୍ଟି ହେବ ଏହାର କଳ୍ପନା ମଧ କରିନଥିଲା ସୁଦାମ - ସୁମତି ଇଲୋ ବୋଉଲୋ କହି କାନ୍ଦିଉଠିଲା... ହଠାତ୍ ଆକାଶରେ ଝଡ଼ ଦେଖାଗଲା । ଯେତେହେଲେ ଶ୍ୱଶୁର ସେ । ଦେବତାଙ୍କ ଭଳି । ସୁମତିର ସବୁ ଗର୍ବ ଶ୍ୱଶୁରଙ୍କ ଚିତ୍କାରରେ

ପାଣି ଫାଟିଗଲା । ଚିତ୍କାର ଶୁଣି ପାଖ ପଡ଼ିଶା ଘରର ତାଟି କବାଟ ଫିଟିଗଲା । ନରି ମଉସା ଘନ ଦାଦା ଦଉଡ଼ି ଆସିଲେ । ସେତେବେଳକୁ ବିପ୍ରଚରଣ ଅନ୍ଧାର ରାସ୍ତାରେ କୁଆଡ଼େ ଚାଲିଗଲେଣି । ସୁଦାମ ଭୋ ଭୋ କରି କାନ୍ଦି ପକାଇଲା, ନରି ମଉସା ଘନଦାଦାକୁ ବଡ଼ ବିକଳରେ ଅନୁରୋଧ କଲା.... ବାପା ସହଜରେ ବ୍ଲଡ଼ପ୍ରେସର ରୋଗୀ, ମୁଁ ଚାଣ୍ଡାଳ ଏଭଳିଆ କାର୍ଯ୍ୟ କରିବାର ଉଚିତ ନଥିଲା । ଚାଲ ନରି ମଉସା, ଘନ ଦାଦା ଜଲ୍‌ଦି ଚାଲ, ଯଦି ଅନ୍ଧାର ଭିତରେ ବାପା କେଉଁଠି ଝୁଣ୍ଟି ପଡ଼ିବେ ତ ସରିଲା କଥା । ବାପା ଫେରି ଆସନ୍ତୁ ମୁଁ ତାଙ୍କ ଗୋଡ଼ ତଳେ ପଡ଼ି କ୍ଷମା ମାଗିବି । ସୁମତି ଭିତରୁ ଥାଇ କହିଲା 'ଜଲ୍‌ଦି ଯାଅ ମୋ ମନରେ କାହିଁକି ପାପ ଛୁଉଁଛି ।'

ଗାଁରାସ୍ତା - ରାତିହେଲେ ଜନମାନବ ଶୂନ୍ୟ ହୋଇଯାଏ । ହାତରେ ଲାଣ୍ଟେନ ଓ ବାଡ଼ି ଧରି ଗାଁରୁ କିଛି ଲୋକ ବାହାରି ଆସିଲେ । ଆଗରେ ଚାଲିଥାଏ ସୁଦାମ - ମନରେ ନାନା ପ୍ରକାର ଆଶଙ୍କା । ରାସ୍ତାରେ ଥିବା କୂଅ ପୋଖରୀ ଗାଡ଼ିଆ ସବୁ ତନ୍ନ ତନ୍ନ କରି ଖୋଜା ଚାଲିଲା.... କେଉଁଠି ହେଲେ ପତ୍ତା ମିଳିଲା ନାହିଁ । ସୁଦାମ ମଝିରେ ମଝିରେ ବାପା ବାପା ବୋଲି ଚିତ୍କାର କରି ଉଠୁଥାଏ । ମଝିରେ ନରି ମଉସା କହିଉଠିଲେ 'ବିପ୍ରଚରଣ ଘର ଛାଡ଼ି କୁଆଡ଼େ ଯାଏନା - ଯୁଆଡ଼େ ଗଲେ ମଧ ସନ୍ଧ୍ୟା ପୂର୍ବରୁ ଘରକୁ ଫେରି ଆସେ । ସେ ଏଇ ପାଖ ଆଖରେ କେଉଁଠି ଥିବ । ବଦରାଗୀଟା ସେ.... ହଠାତ୍ ରାଗିଯାଇଛି । ରାଗ ଶାନ୍ତ ହେଲେ ପୁଣି ଘରକୁ ଫେରି ଆସିବ ।'

ସୁଦାମର ମୁଣ୍ଡ କିଛି କାମ କରୁନଥାଏ - ସେ ବାରମ୍ବାର ନିଜର କପାଳକୁ ହାତମାରି ଦୋଷ ଦେଉଥାଏ.... ସବୁବେଳେ କହୁଥାଏ, 'ଦୋଷ ମୋର ବାପା, ଦୋଷ ମୋର... ଏଥର ମୁଁ ତମ କଥା ମାନିବି... ଗାଁରେ ରହିବି - ସତରେ ବାପା ଯାହାହେଲେ ପର ଜାଗାରେ ଘର କରି ରହିବା ଅପେକ୍ଷା ନିଜ ଜନ୍ମସ୍ଥାନ ଶତଗୁଣେ ଶ୍ରେୟସ୍କର, ତମେ ଫେରିଆସ ବାପା ତମେ ଫେରିଆସ ।'

ହଠାତ୍ ଆଗରୁ କିଏ ଜଣେ ଲଣ୍ଠନ ଧରି ଆସୁଥିବା ଲକ୍ଷ୍ୟ କରାଗଲା । ନିଶ୍ଚୟ ବାପା ହୋଇଥିବେ । ସମସ୍ତଙ୍କ ନଜର ସେଇଠି ପଡ଼ିଲା । ଆରେ ଏତ ମହାପାତ୍ର ଗୋସେଁଇ । ପାଖ ଗାଁକୁ ବୋଧେ ପୂଜା ଅର୍ଚ୍ଚନା କରିବାକୁ ଯାଇଥିବେ - କାହାର ମାନସିକ ଥିବ ପୂରଣ ହୋଇଗଲା ପରେ ଠାକୁରଙ୍କ ପାଖରେ ପୂଜା ଯାଚିଥିବ । ମହାପାତ୍ର ଗୋସେଁଇଙ୍କ ପାଖ ଦୁଇ ଦୁଇଟା ଗାଁରେ ନା ଡାକ ଅଛି ।

ସାମ୍ନା ସାମନି ହୋଇଗଲେ ସେମାନେ । ସମସ୍ତେ ଏକା ସାଙ୍ଗରେ କହି ଉଠିଲେ 'ଗୋସେଁଇ ମହାପ୍ରଭୁ ଏଇ ବାଟେ ବିପ୍ରଚରଣ ଯିବାର ତମେ ଦେଖିଛ କି ?'

ଗୋସେଁଇ ମହାପ୍ରଭୁ ସାଇକେଲରୁ ଓହ୍ଲେଇ ପଡ଼ିଲେ । 'ପାଖ ଗାଁରୁ ମୁଁ ଏଇତ ଫେରୁଛି । ଆରେ ହଁ ସୁଦାମ.... ତୁ ଟିକେ ଦେଖିବୁ ତମ ଜମି ଉପରେ କିଏ ଜଣେ ମୁହଁ ମାଡ଼ି ପଡ଼ିଛି । ପାଖରେ ତାର ବାଡ଼ିଟାଏ ଥୁଆ ହୋଇଛି - ଧଳା ଲୁଗା ପିନ୍ଧିଥିବାରୁ ହଠାତ୍ କିଛି ଜାଣି ହେଲା ନାହିଁ.... ତାପରେ ମୁଁ ମଧ ତରତରରେ ଥିଲି କାରଣ ରାତି ବହୁତ ହେଲାଣି । ହଉ ତମେ ଯାଅ ଦେଖିନିଅ ମୁଁ ଯାଏ ।'

ଖଣ୍ଡେବାଟରେ ବିପ୍ରଚରଣଙ୍କ ଚାଷଜମି । ସମସ୍ତେ ସେଠାକୁ ଦଉଡ଼ିଲେ... ଆରେ ଏ କଣ ଜମି ମଝିରେ ବିପ୍ରଚରଣ ମୁହଁ ମାଡ଼ି ପଡ଼ିଛନ୍ତି... ପାଖରେ ସାହା ବାଡ଼ିଟା ପଡ଼ିଛି । ସମସ୍ତେ ଏକା ସ୍ୱରରେ ଡାକି ଉଠିଲେ - ବିପ୍ରଚରଣ - ବିପ୍ରଚରଣ ଉଠ ଉଠ । ତାଙ୍କ ଉପରେ କଚାଡ଼ି ହୋଇ ପଡ଼ିଲା ସୁଦାମ.... 'ବାପା.... ବାପା.... ଉଠ ବାପା । ଶେଷରେ ମୋରି କଥାରେ.... ତମେ କଣ ଶୁଣୁନାହଁ ବାପା.... ସବୁ ଦୋଷ ମୋର । ସବୁ ଦୋଷ ମୋର ।' ବିପ୍ରଚରଣ ଶୋଇ ପଡ଼ିଥିଲେ, ସବୁଦିନ ପାଇଁ । ସୁଦାମର ଚିତ୍କାର ପବନରେ ମିଳାଇ ଯାଉଥିଲା । ଘନଦାଦା ନରି ମଉସା କହୁଥିଲେ 'ସତରେ ଲୋକଟା ତାର ମାଟି ମା'କୁ କେତେ ଭଲ ପାଉଥିଲା ।'

❖

# ସୂର୍ଯ୍ୟାସ୍ତ ପରେ

ସୂର୍ଯ୍ୟ ଅସ୍ତ ହେବା ଉପରେ :

ଅସ୍ତଗାମୀ ସୂର୍ଯ୍ୟଙ୍କର ସ୍ୱର୍ଣ୍ଣାଭ କିରଣ ସମୁଦ୍ରର ଢେଉ ଉପରେ ସୃଷ୍ଟି କରୁଛି ଏକ ମନଲୋଭା ଦୃଶ୍ୟ । ଏଇଥି ପାଇଁ ପୁରୀ ମହୋଦଧି କୂଳକୁ ଛୁଟି ଆସନ୍ତି ଅସଂଖ୍ୟ ଭାବୁକ, ଲେଖକ, କବି ଏବଂ ସୌନ୍ଦର୍ଯ୍ୟ ପିପାସୁ ମଣିଷମାନେ । ସମୁଦ୍ରର ନୀଳ ଢେଉର ଘନ ଗର୍ଜନ ସେମାନଙ୍କ ମନରେ ଖେଳାଇ ଦିଏ ଅପୂର୍ବ ଶିହରଣ । ଖାସ ସେଇଥିପାଇଁ ଦୂରଦୂରାନ୍ତରୁ ଛୁଟି ଆସନ୍ତି ପର୍ଯ୍ୟଟକମାନେ ସେମାନଙ୍କର ଛୁଟି କଟାଇବା ପାଇଁ । ଏକାଥରକେ ଦୁଇ ଦୁଇଟି ଇଚ୍ଛା ପୂରଣ - ବଡ଼ ଠାକୁର ଦର୍ଶନ, ବଡ଼ ଦାଣ୍ଡ ଦର୍ଶନ ଏବଂ ବଡ଼ ସମୁଦ୍ରର ବଡ଼ ବେଳାଭୂମି ଦର୍ଶନ । ସତରେ କି ଅଲୌକିକ ଏ ଅନୁଭୂତି । କେବଳ ଏହି ଅନୁଭୂତିକୁ ଖୁବ୍ ପାଖରୁ ଅନୁଭବ କରିବା ପାଇଁ ଜିଦ୍ କରି କମଳା ତା ସ୍ୱାମୀଙ୍କ ସାଙ୍ଗରେ ପୁରୀ ବଦଳି ହୋଇ ଆସିଥିଲା ଏବଂ ସମୁଦ୍ର ପାଖାପାଖି ଏକ ଭଡ଼ା ଘରେ ରହୁଥିଲା । ଏକମାତ୍ର ଉଦ୍ଦେଶ୍ୟ ସମୁଦ୍ରର ଶବ୍ଦାୟିତ ତରଙ୍ଗକୁ ଉପଭୋଗ କରିବା, ବଡ଼ ଦେଉଳ ଏବଂ ବଡ଼ ଠାକୁରଙ୍କୁ ଦର୍ଶନ କରିବା । ସନ୍ଧ୍ୟାବେଳର ସମୁଦ୍ର କୂଳର ଦୃଶ୍ୟ ଅତିବ ମନୋରମ । ଝରକା ଖୋଲିଦେଲେ ସବୁ କିଛି ଦେଖାଯାଏ । ଦେଖାଯାନ୍ତି ନୋଳିଆମାନେ, ଦେଖାଯାନ୍ତି ଘୋଡ଼ା ଏବଂ ଓଟମାନେ, ଦେଖାଯାନ୍ତି ପୁଅ ଝିଅ ଯୁବକ ଯୁବତୀମାନେ ଯେଉଁମାନଙ୍କ ଭିଡ଼ ଲାଗିଥାଏ ଉଠା ଚାହା ଦୋକାନୀ ଏବଂ ଉଠା ଜଳଖିଆ ଦୋକାନ ନିକଟରେ । ସତେଯେପରି ଜୀବନକୁ ପୂର୍ଣ୍ଣ ପ୍ରାଣରେ ଉପଭୋଗ କରୁଛନ୍ତି ସେମାନେ । ଝରକା ଖୋଲିଦେଇ ଉତ୍ତୀର୍ଣ୍ଣ ସନ୍ଧ୍ୟାର ସେଇ ମନୋରମ ଦୃଶ୍ୟକୁ ଆକଣ୍ଠ ଚିତ୍ତରେ ପାନ କରିଯାଉଥିଲା ସିଏ । ସ୍ୱାମୀ ଅମରେଶ କିନ୍ତୁ ଏସବୁ ଠାରୁ ବହୁ ଦୂରରେ । ଖାଲି ସ୍ତ୍ରୀଙ୍କର ବାଧ ବାଧକତାରେ ସେ ରାଜି ହୋଇଥିଲେ ଏ ବଦଳି ପାଇଁ । ଆଉ ତାଙ୍କର ରାଜି ହେବାର ଅନ୍ୟ ଏକ କାରଣ ମଧ ଥିଲା, ତାହା ହେଲା କମଳା ଘରେ ଅନେକ ସମୟ ଏକୁଟିଆ ରହିବ କାରଣ ପୁଅ ଝିଅ ଦୁଇଟା ଯାକ ବାହାରେ ରହୁଛନ୍ତି । ସେମାନଙ୍କର ପଢ଼ା ସରିବାକୁ ଆହୁରି କିଛି ଦିନ ଲାଗିବ । ଏଣୁ ପୁରୀ ଏମିତି ଗୋଟେ ଯାଗା ଯେଉଁଠିକୁ ଗଲେ ମାନସିକ ପରିବର୍ତ୍ତନ ନିଶ୍ଚିତ ଭାବେ ଘଟିବ ହିଁ ଘଟିବ । ଅତଏବ ବାଧ୍ୟ ହୋଇ ସେ ନିଜ ସ୍ତ୍ରୀଙ୍କ କଥା ଭାଙ୍ଗି ନ ପାରି ପୁରୀକୁ ଚେଷ୍ଟାକରି ବଦଳି ହୋଇ ଆସିଲେ । ହଠାତ୍ ସରକାରୀ ଘର ନ ମିଳିବାରୁ ସେ ଜାଣିଶୁଣି ସମୁଦ୍ର

କୂଳ ପାଖରେ ଭଡ଼ା ଘରଟିଏ ନେଇଛନ୍ତି । କମଳା ମଧ ଏହି ଆୟୋଜନରେ ଖୁବ୍ ଖୁସି । କାରଣ ସକାଳେ ସଞ୍ଜବେଳେ ସମୁଦ୍ର ବେଳାଭୂମିରେ ଘେରାଏ ବୁଲି ଆସିଲେ ମନଟା ପ୍ରଫୁଲ୍ଲ ରହେ । ତା'ପରେ ପ୍ରତ୍ୟେକ ରବିବାର ମନ୍ଦିର ଦର୍ଶନ । ଏସବୁ ଭାଗ୍ୟରେ ଥିଲେ ମିଳେ ।

ଗଭୀର ମନୋନିବେଶ କରି ସୂର୍ଯ୍ୟାସ୍ତର ଏ ଅପୂର୍ବ ଶୋଭାକୁ ଉପଭୋଗ କରୁଥିଲା କମଳା । ହଠାତ୍ ପଛପଟୁ କାହାର ଡାକ ଶୁଣି ସେ ଚମକି ଉଠିଲା... କିଏ କିଏ... ? 'ଆରେ ତମେ କ'ଣ ଚମକି ଉଠିଲ କି କମଳା ? ମୁଁ ଆସିଛି ମୁଁ... । ' କମଳାର ମନେହେଲା ସତେ ଯେପରି ଏ ସ୍ୱର ସହିତ ସେ ଖୁବ୍ ପରିଚିତ । କିନ୍ତୁ ସୁମନ୍ତ ଏଠି ଏ ସମୟରେ... ? ବସିଥିବା ସ୍ଥାନରୁ ଖୁବ୍ ଜୋରରେ ଉଠିପଡ଼ି କବାଟ ଆଡ଼କୁ ଦଉଡ଼ି ଆସିଲା ସିଏ । ଆରେ କବାଟ ତ ବନ୍ଦ ... କବାଟ ଖୋଲି ଡ୍ରଇଁ ରୁମକୁ ଆସି ଦେଖିଲା... କେହି କୁଆଡ଼େ ନାହିଁ । ଆଜି ତ ଅମରେଶ ଡେରିରେ ଆସିବେ ବୋଲି କହି ଯାଇଛନ୍ତି । ତା ପରେ ସୁମନ୍ତ... । ନା ନା ଏମିତି ହୋଇପାରେ ନା । କସ୍ମିନ କାଳେ ହୋଇ
ପାରେନା । ସେ ତ ତା ପାଇଁ ଅତୀତ । ଅତୀତକୁ ନେଇ ବର୍ତ୍ତମାନର ଏ ସ୍ୱପ୍ନକୁ ନଷ୍ଟ କରିବାର କିଛି ମାନେ ହୁଏନା । ସୁମନ୍ତଙ୍କ ସ୍ଥାନ ତ ଏକୁଟିଆ ଅମରେଶଙ୍କର । ସେଠି ପୁଣି ସୁମନ୍ତଙ୍କର ଅନୁପ୍ରବେଶ କାହିଁକି ?

ଝରକା ବନ୍ଦ କରି ନିଜ ବେଡ୍ ରୁମକୁ ଚାଲିଆସିଲା ସିଏ... ଝରକା କବାଟ ସବୁ ଭଲ କରି ବନ୍ଦ କରି ରଖିଲା... ସେତେବେଳକୁ ସେ ଭୟରେ ଝାଳରେ ଜୁତୁବୁତୁ ହୋଇଯାଇଥାଏ । ଏମିତି କାହିଁକି ହେଲା ... ସୁମନ୍ତକୁ ସେ ଛାଡ଼ି ଆସିବାର ପନ୍ଦର ବର୍ଷ ହେଲାଣି - ସେ ସବୁ କଲେଜ ଜୀବନର ସ୍ମୃତି ।

ସେତେବେଳକୁ କମଳାର କବିତା ଲେଖିବାର ଝୁଙ୍କ ବଢ଼ି ଯାଇଥିଲା । କିନ୍ତୁ ସେ କବିତା ସବୁ ପ୍ରକାଶିତ ହେବାର ବାଟ ଖୋଜି ପାଉ ନଥିଲା । ସେଥିପାଇଁ ବାଟ ବତାଇ ଦେଇଥିଲେ ସୁମନ୍ତ । ସୁମନ୍ତ ତା ଠାରୁ ଦୁଇ ବର୍ଷ ସିନିଅର । ସେ ବର୍ଷ କଲେଜ ମାଗାଜିନରେ ପ୍ରଥମ କରି କମଳାର କବିତା ପ୍ରକାଶ ପାଇଥାଏ ଏବଂ କବିତାକୁ ଆଧାରିତ କରି ସୁମନ୍ତଙ୍କ ସାଥିରେ ତା'ର ପରିଚୟର ସୂତ୍ରପାତ ହୁଏ ଏବଂ କମଳାର ଏ କବିତାଗୁଡ଼ିକୁ ନେଇ ବାହାର ଦୁନିଆ ସାଙ୍ଗରେ ତାକୁ ପରିଚିତ କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ସୁମନ୍ତ । ସହର ଭିତରେ ସହର ବାହାରେ ଅନୁଷ୍ଠିତ ହେଉଥିବା କବି ସମ୍ମିଳନୀକୁ ସୁମନ୍ତ କମଳାକୁ ନେଇ ଯାଉଥିଲେ । ସବୁ ଖବରକାଗଜ ପତ୍ରପତ୍ରିକାରେ ତାଙ୍କର କବିତା ସ୍ଥାନ ପାଉଥାଏ । ଫଳ ସ୍ୱରୂପ ଦୁଇଜଣଙ୍କ ମଧ୍ୟରେ ଏକ ଅନାବିଳ

ସମ୍ପର୍କ ଗଢ଼ି ଉଠେ ଏବଂ ଏ ସମ୍ପର୍କକୁ ସାମାଜିକ ସମ୍ପର୍କ ହିସାବରେ ସ୍ୱୀକୃତି ଦିଆଯାଇ ପାରିଲା ନାହିଁ । କାରଣ ସୁମନ୍ତଙ୍କ ବାପା ମାଆ ସାଧାରଣ ପରିବାରରୁ ଆସିଥିବାରୁ ଏବଂ କମଳା ଏକ ଥିଲା ବାଲା ଘରର ଝିଅ ହୋଇଥିବାରୁ ଏ ବିବାହ ସମ୍ଭବ ନୁହେଁ ବୋଲି କମଳାର ପିତାମାତା ରୋକ୍ ଠୋକ୍ ଭାବରେ ଜଣାଇ ଦେଲେ । ଫଳରେ ସୁମନ୍ତ ପଛକୁ ଫେରିଗଲା । କିନ୍ତୁ କମଳା ଫେରି ପାରିଲା ନାହିଁ । ପରିସ୍ଥିତି ଏପରି ହେଲା ଯେ ସୁମନ୍ତ ସେ ସହର ଛାଡ଼ି ଚାଲିଗଲା  ଏବଂ କମଳା ଅମରେଶଙ୍କୁ ବାହା ହୋଇଗଲା । ଆଉ ସେହି ଦିନଠାରୁ କମଳା ସୁମନ୍ତଙ୍କର କୌଣସି ଖବର ନେବା ପାଇଁ ଚେଷ୍ଟା ମଧ୍ୟ କରି ନଥିଲା । କାରଣ ସେ ଚାହୁଁ ନଥିଲା ଯେ ଅମରେଶ ଏ ବିଷୟରେ ତାକୁ ସନ୍ଦେହ କରନ୍ତୁ । ଏଥି ନିମନ୍ତେ ସେ ପ୍ରାଣପଣେ ଚେଷ୍ଟା କରିଥିଲା ଅମରେଶଙ୍କୁ ଖୁସି କରିବା ପାଇଁ ଏବଂ କୃତକାର୍ଯ୍ୟ ମଧ୍ୟ ହୋଇଥିଲା । ଅମରେଶ ମଧ୍ୟ ନିଜ ଚେଷ୍ଟାରେ ତ୍ରୁଟି କରି ନଥିଲେ - କମଳାର ସବୁ ଅନୁରୋଧ ଆପତ୍ତିକୁ ସମାଧାନ କରିବାକୁ ଆଗେଇ ଆସିଥିଲେ । ପୁଅ ଝିଅମାନେ ମଧ୍ୟ ବେଶ୍ ଶୃଙ୍ଖଳିତ । ବର୍ତ୍ତମାନ ସେମାନେ ବୋଡିଂ ସ୍କୁଲରେ ଅଧ୍ୟୟନରତ ।

ଧୀରେ ଧୀରେ ସବୁ କିଛି ସ୍ୱାଭାବିକ ହୋଇ ଆସୁଥିଲାବେଳେ ହଠାତ୍ ସୁମନ୍ତ ତା ମନ ଭିତରକୁ କାହିଁକି ପ୍ରବେଶ କରି ଆସିଲେ ସେ କଥା ହିଁ ଚିନ୍ତା କରୁଥିଲା କମଳା । ସମୁଦ୍ରର ବେଳାଭୂମି ଏବେ ନିର୍ଜନ ହୋଇଯିବଣି । ପରିଭ୍ରମଣକାରୀମାନେ ନିଜ ନିଜର ନୀଡ଼କୁ ପ୍ରତ୍ୟାବର୍ତ୍ତନ କରିବେଣି । ଆଉ କିଛି ସମୟ ପରେ ଆସିଯିବେ ଅମରେଶ - ଗେଟ୍ ବାହାରୁ ହିଁ ଚିତ୍କାର କରିବେ 'କମଳା କମଳା...  ଜଲଦି ଖୋଲ... ।' ଅସମ୍ଭବ ଏ ମଣିଷଟା - କେମିତି ଏତେ ସମୟ ଧରି ଅଫିସରେ କାମ କରନ୍ତି କେଜାଣି । ଘରକୁ ଆସିଲା ମାତ୍ରେ ହଲାପଟା ଆରମ୍ଭ କରି ଦେବେ । ଦୁଇ ଦୁଇଟା ଛୁଆର ବାପା ହୋଇ ମଧ୍ୟ ପିଲାଳିଆମି ଗଲାନି । କମଳା ମନକୁ ମନ ତକିଆଟାକୁ କୁଣ୍ଢେଇ ଧରି ବେଶ୍ କିଛି ସମୟ ନିଜକୁ ତାଙ୍କ ଚିନ୍ତାରେ ହଜେଇ ଦେଲା... । ଆଜି ଆସନ୍ତୁ ସିଏ - ତାଙ୍କୁ କହିବି ଅଫିସରୁ ସେ ଏଥର ଯଲଦି ଆସିବେ । ଡେରି ହେଲେ ବାରଆଡ଼ୁ ବାର ଚିନ୍ତା ତାଙ୍କ ମୁଣ୍ଡରେ ପଶୁଛି ।

ଆରେ ଆରେ ... ଦାଣ୍ଡ କବାଟ ଟାକୁ କିଏ ବାଡ଼ଉଛି । ଆସିଗଲେ କି କ'ଣ ? କମୁ ... କମୁ ... କବାଟ ଖୋଲ । ୟାଙ୍କର ତ ରାତି ଦଶଟା ବେଳେ ଆସିବା କଥା - ବର୍ତ୍ତମାନ ତ ରାତି ସାଢ଼େ ଆଠ । 'କମୁ କଣ ତମେ ଭିତରଟାରେ କରୁଛ କେଜାଣି ଇଆଡ଼େ ମୁଁ ଯେ ଝାଳରେ ବୁଡ଼ିଗଲିଣି ।' କମଳା ତର ତର ହୋଇ ଉଠିଗଲା ... ପିନ୍ଧା ଲୁଗାଟାକୁ ସଜାଡ଼ିବାକୁ ମଧ୍ୟ ବେଳ ପାଇଲା ନାହିଁ । କି ମଣିଷ ଏଇ ... ଟିକିଏ ମଧ୍ୟ ସମ୍ଭାଳି ପାରୁନାହାନ୍ତି । 'ଯଲଦି ଖୋଲ କମଳା ... ଯଲଦି ।' କବାଟ ଖୋଲୁ ଖୋଲୁ

ତାକୁ ଗୋଟା ପଣେ ଟେକି ନେଇ ଖଟ ଉପରେ ଶୁଆଇ ଦେଇ ଗଭୀର ଆଶ୍ଳେଷରେ ବାନ୍ଧି ପକାଇଲେ ଅମରେଶ । 'ଆରେ ଆରେ ଯେ କଣ ... ଓ ଛାଡ଼ ... ଛାଡ଼ ... ମୁଁ ଯେ ପେଶି ହୋଇ ଯାଇଛି । ଆରେ ... ତମ ଦେହ କଣ ଝାଳରେ ଜୁତୁ ଜୁତୁ ... ଘଟଣା କଣ - ତମେ ଯଲଦି ଫେରି ଆସିଲ ... ମତେ ଟିକେ ଫୋନ୍ କରି ଦେଇନି ମୁଁ ଅତ୍ୟନ୍ତ ପକ୍ଷେ ରୋଷେଇଟା ସାରିଦେଇଥାନ୍ତି ... ?' ଅମରେଶ କହିଲେ 'ମୋର ଆଜି ମୁଡ୍ ଭଲ ନାହିଁ । ଦେଖୁନ ଆଜି ରାତି ଖବର କାଗଜରେ କ'ଣ ସବୁ ବାହାରିଛି । ମୁଁ ପୁଣି ତଦନ୍ତ କରିବି । ସତ କହିଲେ କମୁ - ଏ କବି ଲେଖକମାନେ କଣ ସତରେ ପାଗଳ । କିଏ ଜଣେ କହିଛନ୍ତି ପାଗଳ ନ ହେଲେ କୁଆଡ଼େ ଲେଖା ବାହାରେନି । ମୁଁ ତ ବେରସିକ ଲୋକ - ମତେ ସାହିତ୍ୟ ଫାହିତ୍ୟ ଆସେ ନାହିଁ । ତମେ କୁଆଡ଼େ କବିତା ପଢ଼ିବାକୁ ଭଲପାଅ । ଦେଖିଲ ଏ ଯାହାର ଫଟ ବାହାରିଛି ସେ କୁଆଡ଼େ ଆଜି ଦିନବେଳେ ସମୁଦ୍ରକୁ ଗାଧୋଇବା ପାଇଁ ଆସିଥିଲା ... ସମୁଦ୍ର ଆଜି ଜୁଆରିଆ ଥିଲା । କୁଆଡେ ଲୋକଟା ଚାଲିଗଲା କେହି ପତା ପାଇଲେ ନାହିଁ । ଏଇ ସନ୍ଧ୍ୟାବେଳେ ତା'ର ଶବଟା ପୁଣି ଆସି କୂଳରେ ଲାଗିଲା ... ଲୋକେ ପକେଟରୁ କିଛି ଓଦା କାଗଜ ପାଇଲେ - ସେଥିରେ ବଡ଼ କଷ୍ଟରେ ତା ନା ଉଦ୍ଧାର କଲେ ' କବି ସୁମନ୍ତ ପଟ୍ଟନାୟକ ' ସେ କୁଆଡେ ତାଙ୍କର କବିତା ସଂକଳନ ' ପ୍ରଥମ ପ୍ରେମ ' ପାଇଁ ନିକଟରେ ସମ୍ମାନିତ ହୋଇଥିଲେ ... ସମ୍ବାଦରେ ତାହା ମଧ ବାହାରିଛି ଯେ ନିକଟରେ ତାଙ୍କର ମାନସିକ ବିକୃତି ଘଟିଥିଲା ଏବଂ ସେ ଗତ କିଛି ଦିନ ଧରି ପୁରୀରେ ଅବସ୍ଥାନ କରୁଥିଲେ - ଏ ପାଗଳମାନଙ୍କ କେଶ୍‌ରେ ମୁଁ ବା କ'ଣ ଅନୁଧାନ କରିବି ... କ'ଣ ବା ରିପୋର୍ଟ ଦେବି .... ।'

ଏତେ କଥା ଶୁଣିବାକୁ ଧୈର୍ଯ୍ୟ ନଥିଲା କମଳାର ... ସେ ଗୋଟିଏ ଝାମ୍ପରେ ଅମରେଶଙ୍କ ହାତରୁ ଖବର କାଗଜଟିକୁ ଛଡ଼ାଇ ଆଣିଲା - ପାଗଳ ସୁମନ୍ତଙ୍କ ମୃତ୍ୟୁରେ କିଏ ଦାୟୀ ... ଏ କଥା ହିଁ ଚିନ୍ତା କରୁ କରୁ ସେ ବିମର୍ଷ ହୋଇଯାଇଥିଲା । ଅମରେଶ ତାକୁ କହିଲେ ' ହଉ ହଉ ଚାଲ ଯିବା ବାହାରେ ଖାଇ ଆସିବା ... ମୁଁ ଜାଣେ କବିମାନଙ୍କ ପ୍ରତି ତମର ଦୁର୍ବଳତା ବହୁତ । ମୋର ମଧ ମାନସିକ ଅବସ୍ଥା ଠିକ୍ ନାହିଁ । କାରଣ ଯିଏ ଯେଉଁଥି ପାଇଁ ପ୍ରାଣ ଦେଉ ସେ ସବୁ ବିଷୟରେ ମୁଣ୍ଡ ଖେଳାଇବା କଣ ଖାଲି ମୋରି କାମ ? ଏ ସବୁ ଦାୟିତ୍ୱ ମୁଁ ଆଉ ନେବି ନାହିଁ ବୋଲି ସରକାରଙ୍କୁ ଜଣାଇଦେବି ...' କମଳା ତାଙ୍କ ହାତ ଧରି ଯାଉ ଯାଉ କହିଲା ... 'ହଁ ହଁ ସେଇୟା କର ... ତାପରେ ପୁରୀ ଯାଗାଟା ଜମାରୁ ଭଲ ନୁହେଁ । ଏଠି ମଧ ବେଶୀ ଦିନ ରହିଲେ ଦେହ ମନ ଖରାପ ହୋଇଯିବ ।'

❖

# ଅନ୍ତର୍ଦାହ

ବାରମ୍ବାର ହାତ ଘଣ୍ଟାକୁ ଚାହୁଁଥିଲା ସୁଜାତା । ଆଜି ସକାଳୁ ସକାଳୁ ଦାଣ ଦୁଆର ଖୋଲିଲା ମାତ୍ରେ କଳାବିଲେଇଟାକୁ ଦେଖି ପକାଇ ଚମକି ଉଠିଥିଲା । ଆଉ ସେତିକି ବେଳୁ ତା ମନରେ ଖାଲି ପାପ ଚିନ୍ତା ଆସୁଥିଲା । ଚାରିଟା ବାଜିଲାଣି । ଏତେବେଳକୁ ନମିତା ଫେରି ଆସିବା କଥା । ସମରେନ୍ଦ୍ର କଲେଜରୁ ଏଇନା ଫେରୁଥିବେ । ଫେରିଲା ମାତ୍ରେ ପଚାରିବେ ନମିତା ଆସିଲାଣି କି ନାହିଁ । ବାବୁଲା ଉପରେ କାହାରି ନଜର ନାହିଁ । ସେ କେତେବେଳେ ଯାଏ କୁଆଡ଼େ କେହି ଚିନ୍ତା କରନ୍ତି ନାହିଁ । ବାପା ମାଆଙ୍କର ଏକମାତ୍ର ଚିନ୍ତା ନମିତାକୁ ନେଇ । ପୁରାପୁରି ମା ରୂପ ନେଇଛି ସେ । ଡେଙ୍ଗୀ ପତଳୀ ଶ୍ୟାମଳୀ । ବେଶ୍ ସୁନ୍ଦର ଦେଖିବାକୁ । ଆଉ ସେଇଥିପାଇଁ ହିଁ ବେଶୀ ଚିନ୍ତା ସୁଜାତାଙ୍କର । ଜନ୍ମବେଳକୁ ସବୁ ଲୋକ ଖୋଜନ୍ତି ପୁତ୍ର ସନ୍ତାନ କିନ୍ତୁ ଦେଲାବେଳକୁ ସବୁ ସ୍ନେହ ଢାଳିଦିଅନ୍ତି ଝିଅ ଉପରେ । ବାବୁଲା ବଡ଼ ନମିତା ସାନ । ଏଇ ବାବୁଲା ଜନ୍ମ ବେଳକୁ କମ ହୁଲ୍ଲାଗୁଲ୍ଲା ହୋଇନି ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ । ବିଶେଷ କରି ସମରେନ୍ଦ୍ରଙ୍କ ମା ଏଥିପାଇଁ ହିଁ ଦାୟୀ । ଶାଶୁ କୁହନ୍ତି ପୁଅ ଜନ୍ମ ନ ହେଲେ ଆମ ମୁହଁରେ ନିଆଁ ଦବ କିଏ । ପ୍ରଥମ ପିଲା ଜନ୍ମ ହେବାରେ ଡ଼େରି ହେବାରୁ କମ ଉଲ୍ଲୁଗୁଣା ଦେଇ ନାହାନ୍ତି ସିଏ । ସମରେନ୍ଦଙ୍କୁ କୁହନ୍ତି କି ଅଲକ୍ଷଣା ଔଷଧ ଗୁଡ଼ାଏ ଗିଳୁଛି କି ବୋହୂ ? କାହିଁ ଦେହରେ କିଛି ପରିବର୍ତ୍ତନ ଦେଖୁନି । ଗୁଡ଼ାଏ ଓଷା ବ୍ରତର ଫଳ ଏଇ ବାବୁଲା । ହେଲେ ଏବେ ଖୁବ୍ ଗେହ୍ଲାରେ ପାଠପଢା ଅଧାରୁ ଛାଡ଼ିଦେଲା । ଏବେ ନେତାଗିରି କରୁଛି । କୋଉ କ୍ଲବର ସେକ୍ରେଟେରୀ ହୋଇଛି । ଟାଉନ୍ କ୍ଲବ୍‌ର ମେମ୍ବର ହୋଇଛି । କହୁଛି ତମେ ଦେଖ ଦଶବର୍ଷ ଭିତରେ ମୁଁ ମନ୍ତ୍ରୀ ହେବି । ବାପା କେଇଟା ପଇସା ଘରକୁ ଆଣୁଛନ୍ତି ଯେ ମୋ ଉପରେ ଖାଲି ଗରଗର ହେଉଛନ୍ତି । ଢେଙ୍କେ ମାଆଙ୍କ ସ୍ନେହାଦର ପାଇ ସେ ଇନ୍ଦ୍ର ଚନ୍ଦ୍ର ମାନୁନାହିଁ । ଏଣୁ ସବୁ ନଜର କେନ୍ଦ୍ରୀଭୂତ ହୋଇଛି ନମିତା ଉପରେ ।

କୁଆଡ଼େ ଗଲା ନମିତା । ସୁଜାତା ଖାଲି ଘର ଭିତରେ ଏପଟ ସେପଟ ହେଉଥାଏ । ଆଜି ଆସୁ ସିଏ । କଣ ବୋଲି ଭାବୁଛି କି ସିଏ । ଝିଅ ପିଲାଟା । ସନ୍ଧ୍ୟା ହୋଇଗଲେ କେତେ କଥା । ଆମକୁ ଭାବିଲା ବେଳକୁ ମୁଣ୍ଡ କଣ ହେଇଯାଉଛି । ଆଚ୍ଛା ବି.ଏ ପାଠ ପଢୁଛି ଯେ ସମୟର କାଣ୍ଡଜ୍ଞାନ ରହୁନି ।

ହଠାତ୍ ଲୁନାର ହର୍ଣ୍ଣ ଶୁଭିଲା । ଗେଟ ଭିତରୁ ଖୁବ୍ ସ୍ପିଡ୍‌ରେ ଆସି ପୋଟିକୋ ତଳେ ବ୍ରେକ୍ କଷିଲା ନମିତା । ସେତେବେଳକୁ ପାଂଚଟା ବାଜିଲାଣି - ଆଉ ଟିକକ ପରେ ସହରର ରଂଗ ବଦଳିଯିବ । ସକାଳର କୋଳାହଳ କମିଯିବ । ରାତି ଆସିବ । ଆଜିକାଲି ବେଳ କାଳ ଠିକ୍ ନାହିଁ । ସୁଜାତା ଚିତ୍କାର କରି ଦଉଡ଼ି ଆସିଲା । ନମିତା ମଧ ଘର ଭିତରକୁ ଯାଉ ଯାଉ ସୁଜାତାଂକ ସାଂଗରେ ଧକ୍କା ଖାଇଗଲା । ନମି 'ମୋ ମା.. କୁଆଡ଼େ ଥିଲୁ ଏତେବେଳ ଯାଏଁ.. । କଣ କରୁଥିଲୁ ? ଆଜି ତ କିଛି ଏକ୍ସଟ୍ରା କ୍ଲାସ ନ ଥିଲା । ତୁ ଜାଣୁନୁ ତୋ ବୟସ କେତେ ହେଲାଣି ? ଆରେ ଏ କଣ ତୁ ଏମିତି ଥରୁଛୁ କାହିଁକି ? ଆରେ ତୋ ଦେହ ତ ଝାଳରେ ଭିଜି ଯାଉଛି । କଣ ହୋଇଛି ତୋ ପଛରେ କଣ ଗୁଣ୍ଡାମାନେ । ଯେ ମା ମୁଁ କଣ କରିବି.. ବୋଉ.. ବୋଉ.. ।' ଶାଶୁ ଦଉଡ଼ି ଆସିଲେ । ନମିତା ଦଉଡ଼ି ଯାଇ ଶାଶୁଂକ କୋଳରେ ମୁହଁ ଲୁଚାଇଲା । କହିଲା 'କଲେଜରେ ଆଜି ସ୍ପୋର୍ଟ୍‌ସ ଥିଲା ମାମା । ଆଉ ମୁଁ ସ୍ପୋର୍ଟ୍‌ସରେ ଭାଗ ନେଇଥିଲି । ଶହେ ମିଟର, ଦୁଇଶହ ମିଟର ଦୌଡରେ ଭାଗ ନେଇ ମୁଁ ଏଇମାତ୍ର ଘରକୁ ଫେରୁଛି । ମୁଁ ଜାଣେ ମାମା ତମେ ବ୍ୟସ୍ତ ହେଉଥିବ, ଜେଜେ ମା ବ୍ୟସ୍ତ ହେଉଥିବେ । ବାପା ଆସି ମତେ ଖୋଜିବେ, କିନ୍ତୁ ମୁଁ କଣ କରିବି ମାମା - ଆମ କଲେଜର ଗେମ ଟିଚର ମତେ ଏକ ପ୍ରକାର ବାଧ କଲେ । କହିଲେ ତମର ଯେଉଁ ଚେହେରା ନା ତମେ ନିଶ୍ଚୟ ଦଉଡ଼ରେ ପ୍ରଥମ ହେବ । I am sorry ମାମା I am really sorry ମୁଁ ଆଉ ଦୌଡରେ ମିଶିବି ନାହିଁ ।' ଜେଜେ ମା ସୁଜାତାକୁ ବୁଝାଇ ଦେଲେ 'ପିଲାଟା କହୁଛି ଆଉ ଦଉଡ଼ରେ ମିଶିବ ନାହିଁ । ମୁଁ ସମରକୁ କହିଦେବି, ତୁ ଯାଲୁ ଆମ ମା ପାଇଁ ଖାଇବାକୁ ବାଢ଼ିବୁ । ହଁ ନମି । ମୋ ମା'ଟା ପରା ଆଉ ସେମିତି କାମ କରିବୁ ନାହିଁ, ଯେଉଁଥିରେ ତୋ ବାପା ମାଆ ଅଶାନ୍ତି ହେବେ ।' ସୁଜାତା ରାଗରେ ଗରଗର ହୋଇ ଭିତରକୁ ଚାଲିଗଲେ । ପଛେ ପଛେ ନମିତା ମାମା ମାମା ଡାକି ଭିତରକୁ ଗଲା, ଡ୍ରେସ ପତ୍ର ବଦଳାଇବାକୁ ।

ରାତିରେ ଖାଇଲାବେଳେ ସୁଜାତା ନମିତାକୁ ବୁଝାଇଲା । ନମିତା ତୋର ଏଇଟା ଫାଇନାଲ ଇଅର । ମନଦେଇ ପାଠ ପଢ, ସ୍ପୋର୍ଟ୍‌ସରେ ମିଶିଲେ ସମୟ ନଷ୍ଟ ହେବ । ଦେହ ହାତ ଦରଜ ହେବ । ତାପରେ ବାପା ଠିକ୍ କରିଛନ୍ତି ଏମ.ଏ. କରିବା ପାଇଁ ତୋତେ ଦିଲ୍ଲୀ ପଠାଇବେ । ସେଥିପାଇଁ ବି.ଏରେ ଯଥେଷ୍ଟ ଭଲ ରେଜଲ୍ଟ କରିବା ଦରକାର । କଥା ମଝିରେ ନମିତା କହିଲା, 'ବାପା କହୁଥିଲେ ତମେ କୁଆଡ଼େ କଲେଜ ଚଂପିଆନ ଥିଲ । ଖୁବ୍ ଭଲ ଦଉଡୁଥିଲ । ମୁଁ ତ ପଢ଼ାପଢ଼ି ଠିକ୍ କରୁଛି ମାମା । କେବଳ ସପ୍ତାହକୁ ଦିନେ ଦୁଇଦିନ ... ।' 'ହଉ ଛାଡ଼ ସେ କଥା, ତୋର ସ୍ପୋର୍ଟ୍‌ସରେ ମିଶିବା

ମନା । କାରଣ କ୍ୟାରିଅରଟା ଆଗ ତାପରେ ଯାଇ ଯେଉଁକଥା ।' ନମିତା ଆଉ ଉତ୍ତର ଦେଲା ନାହିଁ, ଦୁମଦୁମ କରି ନିଜ ପଢ଼ା ରୁମକୁ ଚାଲିଗଲା । ଝିଅର ଚାଲିକୁ ଦେଖି ସୁଜାତାଙ୍କର ମନଟା ଚହଲି ଉଠିଲା । ହଠାତ୍ ତାଙ୍କର ଧାରଣା ହେଲା ଓହୋ ଝିଅଟା ତାହେଲେ ବଡ଼ ହେଲାଣି । ତାର ମଧ୍ୟ ନିଜ ବିଷୟରେ କହିବାର ଅଧିକାର ହେଲାଣି ।

ରାତିରେ ଶୋଇଲାବେଳେ ସୁଜାତାର ମନେ ପଡ଼ିଗଲା କଲେଜ କଥା । ବେଳେବେଳେ ଅତୀତକୁ ଫେରିଯିବା ପାଇଁ ଇଚ୍ଛା ହୁଏ । ସେଇଟା ଥିଲା କଲେଜ ଜୀବନର ଶେଷ ବର୍ଷ । ତାର ସେତେବେଳେ ବି.ଏ ଫାଇନାଲ ଇଅର । ସୁଜାତା ପଢ଼ାପଢ଼ିରେ ବ୍ୟସ୍ତ ଥାଏ । କିଏ ଜାଣିଥିଲା ବି.ଏ ପରେ ପରେ ତାର ପାଠ ପଢ଼ାରେ ଡୋରି ବନ୍ଧା ହୋଇଯିବ ଏବଂ ଜୀବନର ଗତିପଥ ବଦଳିଯିବ । ଭଲ ପଢୁଥାଏ ବୋଲି ତାଙ୍କ ଘରେ ସମସ୍ତେ ଗର୍ବ ଅନୁଭବ କରୁଥାନ୍ତି । ସେତେବେଳେ ନୂଆ ହୋଇ କଲେଜକୁ ଆସିଥାନ୍ତି ସମରେନ୍ଦ୍ର । କଲେଜ ଆଥଲେଟିକ୍ ଆସୋସିଏସନ ଚାର୍ଜରେ ସେ ଥା'ନ୍ତି । ତାଙ୍କରି ସଂସ୍ପର୍ଶରେ ଆସି ସୁଜାତା ସ୍ପୋର୍ଟ୍‌ସରେ ଭାଗନିଏ ଏବଂ ଦୌଡ଼ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରେ । ଏଥିପାଇଁ ମଧ୍ୟ କମ୍ ପରିଶ୍ରମ କରିବାକୁ ପଡ଼ିନି ତାକୁ । ସକାଳୁ ଭୋରରୁ ଉଠି କଲେଜ ପଡ଼ିଆକୁ ଯିବା, ସେଠାରେ ସମରେନ୍ଦ୍ରଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅଭ୍ୟାସ କରିବା ଏବଂ ଅଭ୍ୟାସ ପରେ ସମରେନ୍ଦ୍ରଙ୍କ ସ୍କୁଟରରେ ବସି ଘରକୁ ଆସିବା, ଏସବୁ ଏକଦମ ଅଭ୍ୟାସରେ ପଡ଼ିଗଲା । ଧୀରେ ଧୀରେ ସୁଜାତା ଏବଂ ସମରେଦଙ୍କ ମଧ୍ୟରେ ସମ୍ପର୍କ ଦୃଢ଼ୀଭୂତ ହେଲା ଏବଂ ପରୀକ୍ଷା ପରେ ପରେ ସେ ସମ୍ପର୍କ ବିବାହରେ ରୂପାନ୍ତରିତ ହେଲା । ଘରେ ବଡ଼ ବୋହୂ ହୋଇ ଆସିବା ପରେ ସୁଜାତା ଆଉ ପଢ଼ିବା ପାଇଁ ମନ ବଳାଇ ନଥିଲା । ସେ ଅନୁଭୂତି ଏବେ ମଧ୍ୟ ସୁଜାତାର ମନକୁ ଆନ୍ଦୋଳିତ କରେ ।

ସକାଳୁ ଅନେକ ଡେରିରେ ଉଠିଲା ସୁଜାତା । ସମରେନ୍ଦ୍ର ପଚାରିଲେ ରାତିରେ ବୋଧେ ଭଲ ନିଦ ହୋଇନି ଜିତା । ନହେଲେ ଏତେବେଳକୁ ଠାକୁର ପୂଜା ସରିଥାନ୍ତା । ତମର ଡେରି ଦେଖି ବୋଉ ପୂଜା କାମଟା ସାରି ଦେଇଛି । ସୁଜାତା ମନରେ ଭୟ ଜାତ ହେଲା । କେବେ ତ ଏମିତି ହୁଏନି... ଆଜି ସେ ଯେମିତି କିଛି ଗୋଟାଏ ହରେଇ ବସିଛି ଆଉ ସେଇଥିପାଇଁ ସେ ହୁଏତ ମର୍ମାହତ । ଭିତର ଘରୁ ଶାଶୁ ଡାକ ଛାଡ଼ିଲେ... 'ରୋଷେଇ ଡେରି ହେଉଛି ବୋହୂ, ନମି କଲେଜ ଯିବ ଯେ... ବାବୁଲାଟାକୁ ଉଠେଇ ଦେ କାଲି ସେ ଅନେକ ଡେରିରେ ଫେରିଛି ।' ସୁଜାତା ତରତର ହୋଇ କାମ ସାରିବାକୁ ବାହାରିଗଲା । ଆଜି କେମିତି ସବୁ ଅଡୁଆ ତଡୁଆ ହୋଇଯାଉଛି – ନମିତାର କଥା

ଗୁଡ଼ାକ ତା କାନକୁ ଅଖାଡୁଆ ଶୁଭିଲା । ଭାବିଲା ସମରେନ୍ଦ୍ରଙ୍କ ସାଙ୍ଗରେ କଥାବାର୍ତ୍ତା କରିବ ।

ବାବୁଲା ଉଠିଲା ମାତ୍ରେ ପଚାରିଲା... କାଲି ପାର୍ଟି ମିଟିଂ ଥିଲା, ଫେରୁ ଫେରୁ ଡେରି ହେଲା । ଆଚ୍ଛା ବୋଉ କହିଲୁ.. ନମି ପାଇଁ ବର ଖୋଜିଲେ କେମିତି ହେବ । ବାପା କହୁଛନ୍ତି ସେ ଦିଲ୍ଲୀ ଯିବ - ବାହାର ଯାଗା, କେତେବେଳେ କୋଉ କଥା - ତାକୁ ଉଣେଇସି ପୁରି କୋଡ଼ିଏ ଚାଲିଲା - କମ ସେ କମ ଏମ୍.ଏ ପଢୁଥିଲା ସମୟରେ ବାହାଘର ସାରିଦେବା ଭଲ - ତାପରେ ମୁଁ ତ ଅଛି ତୋର କୋଉ କାମ ଅସୁବିଧା ହେବନି... । ବାହାରେ ମଟର ସାଇକେଲ ହର୍ଣ୍ଣ ଶୁଭିବାରୁ... 'ମୁଁ ଆସୁଛି' କହି ବାବୁଲା ପୁଣି ଘରୁ ବାହାରି ଚାଲିଗଲା... । ସୁଜାତା ଭାବିଲା ବାବୁଲାଟା ଟଗଲା ହେଲେ କଣ ହେବ, ବଡ଼ ଭାଇ ଭଳିଆ କଥାବାର୍ତ୍ତା କରୁଛି ।

ଘରୁ ସମସ୍ତେ ଚାଲିଗଲା ପରେ ପୁଣି ଏକୁଟିଆ ହୋଇଗଲା ସୁଜାତା । ବେଳେବେଳେ ଭାବିଲା ନମିତା କଥା, ବେଳେବେଳେ ଭାବିଲା ବାବୁଲା କଥା । ସତକଥା ପିଲାମାନେ ବଡ଼ ହେଲେଣି । ଏବେଠୁ ସଚେତନ ନହେଲେ ତାଙ୍କର ଭବିଷ୍ୟତ ନଷ୍ଟ ହେବ । ତାପରେ ସମରେନ୍ଦ୍ରଙ୍କ ଚାକିରୀ ପାଞ୍ଚବର୍ଷ ଅଛି, ତାରି ଭିତରେ ବାବୁଲା ଓ ନମିର ବାହାଘର ସାରିବାକୁ ପଡ଼ିବ - ଶାଶୁ ସବୁବେଳେ କହୁଛନ୍ତି 'ମୋର ଦିନ କାଳ ସଇଲା, ମୁଁ ଆଖି ବୁଜିଲା ପୂର୍ବରୁ ତୁ ନମିର ବାହାଘର ସାରିଦେ ।'

ତା ପରଦିନ ଗୁଡ଼ାକ ସୁରୁଖୁରୁରେ ଚାଲିଗଲା । ନମିତା ଠିକ୍ ସମୟରେ କଲେଜ ଯାଉଥାଏ ଏବଂ ଆସୁଥାଏ । ଅନେକଥର ଭାବିଲାଣି ସୁଜାତା । ସମରେନ୍ଦ୍ରଙ୍କ ସାଙ୍ଗରେ ବାବୁଲା ଦେଇଥିବା ପ୍ରସ୍ତାବ ବିଷୟରେ କଥାବାର୍ତ୍ତା ହେବ । କିନ୍ତୁ ସମରେନ୍ଦ୍ର ମଣିଷଟା ଏକବାରେ ଏକ ବାଗିଆ । ଏହି ବାବୁଲାର ପଢ଼ା ବିଷୟରେ କିଛି କମ ଯୁକ୍ତିତର୍କ ହୋଇନି । ସମରେନ୍ଦ୍ର ତାକୁ କହିଥିଲେ ପାଠ ପଢ଼ାଟା ମନ ଭିତରୁ ଧରିବାର ଅଛି । ନହେଲେ ପାଠ ହେବନି । ଆମେ ତମେ ଖାଲି ଗୁଡ଼ା ବ୍ୟସ୍ତ ହେବା ସିନା କିଛି କରିପାରିବା ନାହିଁ । ଏଇ ଦେଖ ବାବୁଲାର ଟିଉସନ ପଛରେ କଣ କମ ପଇସା ଖର୍ଚ୍ଚ ହୋଇଛି । ମୁଁ ଜଣେ ଅଧ୍ୟାପକ । ଜଣେ ଶିକ୍ଷକ ପକ୍ଷରେ ତାରି ସାମନାରେ ତା ପୁଅ ପାଠ ପଢ଼ା ଛାଡ଼ି ରାଜନୀତି କରିବ ଏକଥା କଣ ମୁଁ ସହ୍ୟ କରିପାରିବି ? ତମେ କୁହ ଜିତା ମତେ କଣ ଏକଥା ମର୍ମାହତ କରିନାହିଁ ? ତାପରେ ନମିତା, ସେ ମୋର ଗୋଟିଏ ବୋଲି ଝିଅ । ତା ପଢ଼ାପଢ଼ି ପ୍ରତି ମୁଁ ସ୍ୱତନ୍ତ୍ର ଭାବେ ଧ୍ୟାନ ଦେଇଛି । ପୁଅ ନହେଲେ ଝିଅ । ଆଜିକାଲି ଯୁଗ ହେଲାଣି ଝିଅମାନେ ଏରୋପ୍ଲେନ ଚଳେଇଲେଣି, ସ୍ପେସ୍ ସିପ୍‌ରେ ଗଲେଣି । ଦୁନିଆ

ବଦଳିଗଲାଣି ଆଉ ଆମକୁ ସେଇ ବଦଳିବା ଦୁନିଆର ଗତି ସାଙ୍ଗରେ ପାଦ ମିଳାଇ ଚାଲିବାକୁ ପଡ଼ିବ । ତମେ ନମିତାକୁ କହିଦିଅ ସେ ଭଲ ଭାବେ ପଢ଼ାପଢ଼ି କରୁ ।

ଦିଲ୍ଲୀ ଯିବା କଥା ଶୁଣି ନମିତା ମାମାକୁ କହିଲା, 'କାହିଁକି ମାମା ଏଠି କଣ ଉତ୍କଳ ଇଉନିଭରସିଟିରେ ମୁଁ ଏମ୍.ଏ କରି ପାରିବିନି ? ତାପରେ ଯାଇ କମ୍ପିଟେଟିଭ ଦେବାପାଇଁ ମୁଁ ଦିଲ୍ଲୀ ଯିବି - ତମେ ଟିକିଏ ବାପାଙ୍କୁ ମୋ ପାଇଁ ବୁଝାଇ କହିବ ପ୍ଲିଜ୍ । ମୁଁ ଜାଣେ ତମେ କହିଲେ ବାପା ରାଜି ହୋଇଯିବେ ।' ସୁଜାତା ଭାବିଲା ଏସବୁ ବିଷୟରେ ସମରେନ୍ଦ୍ର ସିଦ୍ଧାନ୍ତ ନିଜେ ନିଅନ୍ତି । ତାଙ୍କୁ ବୁଝାଇବାରେ କିଛି ଲାଭ ହେବନି । ସେ ଯାହା କହୁଛନ୍ତି ନମିତାର ଭଲ ପାଇଁ ହିଁ କହୁଛନ୍ତି - ସୁଜାତା ନମିତାକୁ ବୁଝାଇବା ଛଳରେ କହିଲା, ହଉ ତୋର ଆଗେ ବି.ଏ.ର ରେଜଲ୍ଟ ବାହାରୁ ତାପରେ ଯାଇ ଯେଉଁ କଥା । ନମିତା ସବୁ ଶୁଣି କିଛି ଉତ୍ତର ଦେଲା ନାହିଁ । ସୁଜାତା ଦେଖିଲେ କଥାଟାକୁ ଝିଅ ଠିକ୍ ଭାବେ ଗ୍ରହଣ କରିପାରି ନାହିଁ ।

ରାତିରେ ସୁଜାତା ସମରେନ୍ଦ୍ରକୁ ଏକଥା କହିଲା । ସମରେନ୍ଦ୍ର କହିଲେ ଝିଅ ବଡ଼ ହେଲାଣି -ଦୁନିଆର ଭଲମନ୍ଦ ବୁଝିଲାଣି । ତାକୁ ବୁଝାଇବାକୁ ପଡ଼ିବ । ଓଡ଼ିଶାରେ ରହିବା ଆଉ ଦିଲ୍ଲୀରେ ରହିବା ଏକାକଥା ନୁହେଁ । ଏଠି ବାହାର ସ୍କଲାର ମାନଙ୍କ ସାଙ୍ଗେ ମିଶିବାର ସୁଯୋଗ ନାହିଁ । ମୁଁ ତା ପାଇଁ ଜେ.ଏନ୍.ୟୁ.ରେ କିମ୍ବା ଦିଲ୍ଲୀ ୟୁନିଭରସିଟିରେ ବନ୍ଦୋବସ୍ତ କରୁଛି । ସେ ବି.ଏ.ରେ ଅତିକମ୍‌ରେ ଫାଷ୍ଟକ୍ଲାସ ପାଇବାଟା ନିହାତି ଦରକାର । ତାପରେ ଦିଲ୍ଲୀରେ ପରିବେଶ ଅଲଗା । ସେଠି କମ୍ପିଟେଟିଭ ପରୀକ୍ଷା ଦେବା ପାଇଁ ସେ ବହୁ ସୁଯୋଗ ପାଇବ । ବାସ ଆଉ କୌଣସି ଉତ୍ତର ଦେଇନଥିଲେ ସୁଜାତା । ଯେତେହେଲେ ମାଆ ସିଏ ।

ପରୀକ୍ଷା ଯେତେଯେତେ ପାଖ ହୋଇ ଆସୁଥାଏ, ନମିତା ସେତେ ସେତେ ଚୁପ୍ ହୋଇ ଯାଉଥାଏ । ଆଗ ଭଳିଆ ଆଉ ତା ମାମା ପଛରେ ଗୋଡାଉ ନଥାଏ । କଲେଜରୁ ଫେରି ପୂର୍ବ ଭଳିଆ, ମା ଆଉ ଜେଜେ ମା ସାଂଗରେ ହସଖୁସିରେ ମାତୁ ନଥାଏ । ଜେଜେ ମା କିନ୍ତୁ ବୁଝେଇ ଦିଅନ୍ତି - ପରୀକ୍ଷା ଆଉ କେତେଦିନ ରହିଲା ଯେ ? ନମିତାଟା ଆମର ଝଡ଼ିଗଲାଣି । କଲେଜରୁ ଡେରିରେ ଫେରିଲେ କହିଦିଏ ଆଜି ଏକ୍ସଟ୍ରା କ୍ଲାସ ଥିଲା, ନହେଲେ ଲାଇବ୍ରେରୀ ଥିଲା । ବାବୁଲା ବେଳେବେଳେ ନମିତତାକୁ ପଚାରିଦିଏ... 'କେମିତି ଚାଲିଛି ନମି... ଫାଷ୍ଟକ୍ଲାସ ହେବ ତ... ।' ନମିତା ହସିଦିଏ କୁହେ 'ଆର୍ଟସ ପାଠ ବହୁତ କଷ୍ଟ, ଦେଖାଯାଉ କଣ ହେଉଛି ?' ବାପାଙ୍କର ତାଗିଦ ତାକୁ କେହି ଡିଷ୍ଟର୍ବ କରିବ ନାହିଁ । ଦିନେ ଦିନେ ସୁଜାତାଙ୍କର ରାତି ଅଧରେ ନିଦ ଭାଙ୍ଗିଯାଏ,

ଉଠି ଦେଖନ୍ତି ନମିତା ଘରେ ଲାଇଟ ଜଳୁଛି - ପଢ଼ାପଢ଼ିରେ ବ୍ୟାଘାତ ହେବ ବୋଲି ସେ ତା ପଢ଼ାରୁମକୁ ଯାଏ ନାହିଁ।

ବି.ଏ ପରୀକ୍ଷା ସରିଗଲା। ଦୁଇମାସ ଭିତରେ ଫଳ ବାହାରିବ। ତାପରେ ସେ ଦିଲ୍ଲୀ ଯିବ। ସମରେନ୍ଦ୍ର ତାପାଇଁ ଏବେଠୁ ଚେଷ୍ଟିତ ହେଲେଣି - ଦିଲ୍ଲୀରେ ଥିବା ତାଙ୍କର ଅଧ୍ୟାପକ ବନ୍ଧୁମାନଙ୍କ ସହ ସେ ଯୋଗାଯୋଗ ସ୍ଥାପନ କଲେଣି - ଖବର କାଗଜରେ ବିଜ୍ଞାପନ ଦେଖି, ଫର୍ମ ଇତ୍ୟାଦି ମଗାଇବାର ବନ୍ଦୋବସ୍ତ କଲେଣି - ଝିଅ ତାଙ୍କର ଏମ.ଏ କରିବ, କମ୍ପିଟେଟିଭ ଦେବ, ସର୍ବ ଭାରତୀୟ ସ୍ତରରେ କୃତିତ୍ୱ ଅର୍ଜନ କରିବ ଏହାହିଁ ତାଙ୍କର ଚିନ୍ତା ଥାଏ। ସୁଜାତା ଏବଂ ଶାଶୁଙ୍କର ଚିନ୍ତା ବଢ଼ିଯାଇଛି - ଘରେ ଗୋଟାଏ ମାତ୍ର ଝିଅ। ପୁଅ ବାବୁଲାର ତ କିଛି ଠିକଣା ନାହିଁ ସେ ଚବିଶ ଘଣ୍ଟାରୁ ବାର ଘଣ୍ଟା ବାହାରେ ରୁହେ - ବାକି ସମୟ ତା ରୁମରେ କଣ କରେ କେଜାଣି - ବେଳେବେଳେ ସୁଜାତା ପଚାରିଲେ ବାବୁଲା ଉତ୍ତର ଦିଏ... 'ରାଜନୀତିର କିଛି ସମୟ ନଥାଏ ମାମା। ସେସବୁ ତମେ କିମ୍ବା ବାପା କେହିହେଲେ ବୁଝିପାରିବ ନାହିଁ।' ନମିତା ଦିଲ୍ଲୀ ଚାଲିଗଲେ ସେମାନେ ଏକୁଟିଆ ଘରେ ବସି କଣ କରିବେ ? କାହା ସାଙ୍ଗରେ ଦୁଇପଦ ଭଲରେ ମନ୍ଦରେ କଥା ହୋଇପାରିବେ ନାହିଁ - କାରଣ ସମରେନ୍ଦ୍ର ଅଧା ସମୟ କଲେଜରେ ଆଉ ଅଧା ସମୟ ତାଙ୍କ ପଢ଼ାଘରେ କେବଳ ଶୋଇବା ସମୟକୁ ବାଦ ଦେଇ।

ନମିତାର ଦିଲ୍ଲୀ ଯିବାଦିନ ଯେତିକି ପାଖେଇ ଆସୁଥାଏ - ସୁଜାତାର ମନ ସେତିକି ଆନ୍ଦୋଳିତ ହୋଇ ଉଠୁଥାଏ। ଦୁଇବର୍ଷ ତ ଅତିକମ୍‌ରେ ରହିବ - ତାପରେ ଯଦି କମ୍ପିଟେଟିଭ ପାଇଁ ପରୀକ୍ଷା ଦିଏ ତେବେ ଆହୁରି ଦୁଇବର୍ଷ। ଘରେ ବିଲେଇ ଛୁଆଟିଏ ମଧ୍ୟ ନାହିଁ ଯାହା ସାଙ୍ଗରେ ସେ ଖେଳାବୁଲା କରିବ - ସବୁଠୁ ବେଶୀ ବ୍ୟସ୍ତ ହେଉଛନ୍ତି ଜେଜେମା। ଯିଏ କହୁଥିଲେ ସେ ଦିଲ୍ଲୀ ଯାଉ, ନାଁ କରୁ - ତାଙ୍କ ଆଖିରେ ଲୁହ। ସମରେନ୍ଦ୍ର ପୁରୁଷ ପିଲା, ନିଜ ଦୁଃଖକୁ ଭୁଲିବାକୁ ଯାଇ ସେ ବାହାରକୁ ଚାଲି ଯାଆନ୍ତି - କିନ୍ତୁ ସୁଜାତା ତ ଘରେ ରହିବ। ସେ କାହା ଆଗରେ ଲୁହ ଢ଼ାଳିବ। ବାବୁଲାଟା ଏଇ କିଛିଦିନ ହେବ ଚୁପ୍ ରହିଯାଇଛି ନହେଲେ ସେ ମଧ୍ୟ ଘରେ ପାଟି କରନ୍ତା। ଯେତେହେଲେ ମାଆ ପେଟର ଭଉଣୀଟାଏ। ବାବୁଲା ଆଉ ନମିତା ମଧ୍ୟରେ ତିନିବର୍ଷ ଫରକ। ନମିତାକୁ କୋଡ଼ିଏ ଚାଲିଲା, ବାବୁଲାକୁ ଚବିଶ। ନମିତା ଖାଲି ଘର ଭିତରେ ଲଟର ପଟର ହେଉଥାଏ - ବାପା ମାମାଙ୍କ ମୁହଁର ପରିବର୍ତ୍ତନକୁ ଲକ୍ଷ୍ୟ କରୁଥାଏ। କିଛି କହୁ ନଥାଏ ସତେଯେମିତି ତା ଜୀବନରେ ଏକ ବିରାଟ ପରିବର୍ତ୍ତନ ହେବାକୁ

ଯାଉଛି । ଘର ଭିତରେ କେମିତି ଗୋଟାଏ ନିରବତାର ଛାୟା ।

ନିର୍ଦ୍ଧାରିତ ଦିନ ଆସି ପହଞ୍ଚିଗଲା । ସକାଳୁ ସକାଳୁ ଜେଜେ ମା ମନ୍ଦିର ବାହାରିଗଲେଣି । ଗତରାତିରୁ ସୁଜାତାକୁ ନିଦ ନାହିଁ । ନମିତାକୁ ଧରି ଅନେକ କାନ୍ଦିଛି - ସମରେନ୍ଦ୍ର ମଧ୍ୟ ଅନ୍ୟମନସ୍କ ରହୁଛନ୍ତି । ବାବୁଲା ଆଜି ଘରେ ଅଛି, କୁଆଡ଼େ ଯାଇ ନାହିଁ । ନମିତାର ସାଙ୍ଗ କମଳା ଡାକି ଦେଇଛି - ଆଜି ତା ଘରେ ଲଞ୍ଚ୍ । କମଳା ନମିତାର ଖୁବ୍ ସାଙ୍ଗ । ସାଙ୍ଗ ହୋଇ ସେମାନେ ପଢ଼ାପଢ଼ି କରନ୍ତି - କମଳାର ମନ ମଧ୍ୟ ମରିଯାଇଛି । ଦୁଇ ବର୍ଷର ସାଙ୍ଗ ସେମାନେ । ନମିତା ସକାଳୁ ସକାଳୁ ବାହାରି ଯାଇଛି । ରାତିରେ ଟ୍ରେନ ପୁରୁଷୋତ୍ତମ ଏକ୍ସପ୍ରେସ - ରାତି ଦଶଟା ବାଜିବ । ସମୟ ଜଣା ପଡୁନି । ଜିନିଷ ପତ୍ର ପ୍ୟାକିଂରେ ନମିତା ବ୍ୟସ୍ତ । ସାଙ୍ଗରେ କଣ ନେବ । ଲୁଗା ନେବା ନା ଡ୍ରେସ ପିନ୍ଧିବ । ଦୁଇଟା ଯାକ ନେଇଥିବା ଦରକାର । ଟ୍ରେନରେ ଖାଇବ କଣ । ସେଥିପାଇଁ ଅଲଗା ପ୍ୟାକିଂ ହେବ । ଦୁଇ ଦିନର ଯାତ୍ରା । ସୁଜାତାକୁ ଲାଗିଲା ସତେ ଯେପରି ନମିତା ତାଙ୍କଠୁ ଦୂରେଇ ଯାଉଛି । ହଠାତ ପିଲାଙ୍କ ପରି କାନ୍ଦି ଉଠିଲା ସିଏ । ସମରେନ୍ଦ୍ର ଦଉଡ଼ି ଆସିଲେ - ଦଉଡ଼ି ଆସିଲା ବାବୁଲା । ସମରେନ୍ଦ୍ର ବୁଝାଇଦେଲେ । 'ଝିଅ ପାଠ ପଢ଼ିବା ପାଇଁ ଯାଇଛି ଏଥିପାଇଁ ଗୋଟେ କାନ୍ଦ କଣ । ତମେ ଯେତେ ଜୋରରେ କାନ୍ଦୁଛ ସତେ ଯେମିତି ଝିଅ ବାହା ହୋଇ ଶାଶୁଘରକୁ ଯାଉଛି ।' ସୁଜାତା କାନ୍ଦ କାନ୍ଦ ହୋଇ କହିଲେ ' ମାଆ ମୁଁ ନଅମାସ ଦଶଦିନ ଗର୍ଭରେ ଧାରଣ କରି ଜନ୍ମ ଦେଇଛି, ବୟସ ଯାହା ହେଉନା କାହିଁକି ସେ ତ ମୋରି ଆଗରେ ପିଲା ।'

ଦିନବେଳେ ନମିତା ତା ସାଙ୍ଗ ଘରେ ଖାଇ ଫେରିଆସିବ । ସମରେନ୍ଦ୍ର ଏବଂ ସୁଜାତା ଜଲଦି ଜଲଦି ଖାଇନେଲେ । ବାବୁଲା ମଧ୍ୟ ଆଜି ବାହାରକୁ ଯାଇନାହିଁ । ଜେଜେ ମା ଖାଲି ଘର ଭିତରେ ଏପାଖ ସେ ପାଖ ହେଉଛନ୍ତି । ସବୁବେଳେ ଆଖି ତାଙ୍କର ଚାଲି ଯାଉଛି ଗେଟ ପାଖକୁ । କିଛି ଘଣ୍ଟା ପରେ ନମିତା ଟ୍ରେନ୍‌ରେ ବସିବ - ତାଙ୍କ ଆଖି ଆଗରୁ ଦୂରେଇଯିବ । ଜେଜେ ମା ସମସ୍ତଙ୍କ ଅଜାଣତରେ ନିଜ ଆଖିରୁ ଲୁହ ପୋଛିଲେ । ଦୁଇଟା ବାଜିଲା ନମିତା ଫେରି ଆସିବା କଥା ।

ସମରେନ୍ଦ୍ର କହିଲେ ଆଜି ବିଦାୟ ନେବାର ବେଳ । କମଳା ତାକୁ ହୁଏତ ଅଟକାଇ ରଖିଥିବ । ତିନିଟା ବାଜିଲା । ନମିତା ଫେରିଲା ନାହିଁ । ସୁଜାତା ବାଧ୍ୟହୋଇ କମଳା ଘରକୁ ଫୋନ୍ କଲେ । କମଳା କହିଲା 'ମାଉସୀ ସେ ତ ଦୁଇଟା ବେଳୁ ଗଲାଣି । ଘରେ ପହଞ୍ଚି ନାହିଁକି ?' ହଠାତ୍ ସୁଜାତା ଫୋନଟିକୁ ତଳେ ଫୋପାଡ଼ି ଦେଲେ,

ଚଟାଣଟାରେ ଲଥ କରି ବସିପଡ଼ିଲେ । ତିନିଟା ବାଜିଲାଣି - କମଳା ଘରଠାରୁ ତାଙ୍କ ଘର ଦଶମିନିଟର ବାଟ । ଲୁନା ନେଇ ଯାଇଛି ସେ... କାଳେ ବାଟରେ କିଛି... । ନାଇଁ ନାଇଁ ସେମିତି ଭାବିବା ଉଚିତ ନୁହେଁ - ହେ ଭଗବାନ ମୋ ଝିଅର ସେମିତି କିଛି ନ ହୋଇଥାଉ । ସମରେନ୍ଦ୍ର ଘଟଣାଟାକୁ ବୁଝି ସାଙ୍ଗେ ସାଙ୍ଗେ ସ୍କୁଟର ନେଇ ବାହାରିଗଲେ । ଝିଅ ପିଲାଟା । ଆଜି ରାତିରେ ବାହାରକୁ ଯିବ - ଯଦି କିଛି ଭଲ ମନ୍ଦ ହୋଇଯାଏ । ବାବୁଲା ମଧ୍ୟ ଘରୁ ବାହାରିଗଲାଣି - ବାଟ ସାରା ସମରେନ୍ଦ୍ର ଏପଟ ସେପଟ ହୋଇ ଖୋଜି ଶେଷରେ କମଳା ଘରେ ପହଞ୍ଚିଗଲେ । ସେତେବେଳକୁ କମଳା ମଧ୍ୟ ବ୍ୟସ୍ତ ହୋଇ ଦାଣ୍ଡ ବାରଣ୍ଡାରେ ବୁଲୁଥାଏ । ସମରେନ୍ଦ୍ରଙ୍କୁ ଦେଖି ପକାଇ ଦଉଡ଼ି ଆସିଲା - କହିଲା 'ନମିତା କେତେବେଳୁ ଗଲାଣି - ଘରେ ପହଞ୍ଚି ନାହିଁ କାହିଁକି ?' ସମରେନ୍ଦ୍ର ପଚାରିଲେ 'ଗଲାବେଳେ ଟଟେ କିଛି କହୁଥିଲା କି ?' କମଳା ଉତ୍ତର ଦେଲା 'ନାହିଁ ତ - କିନ୍ତୁ ଗଲାବେଳେ ସେ ଭାରି ତରତର ବୋଲି ଜଣାପଡୁଥିଲା ।'

ସମରେନ୍ଦ୍ର ହଠାତ୍ କିଛି ଠଉରାଇ ପାରିଲେନି । ନମିତାର ଆଉ ଜଣେ ଦି ଜଣ ଚିହ୍ନା ସାଙ୍ଗ ଘରକୁ ଗଲେ । ସେମାନେ ମଧ୍ୟ କିଛି ଖବର ଦେଇ ପାରିଲେନି । ସେମାନେ କହିଲେ ପରୀକ୍ଷା ପରେ ଆଉ ସେମାନଙ୍କ ସାଙ୍ଗରେ ତାଙ୍କର ଦେଖା ହୋଇନାହିଁ । କଣ କରିବେ ସମରେନ୍ଦ୍ର, ବାଟସାରା ଖୋଜି ବୁଲିଲେ । ଭାବିଲେ ଥାନାରେ ଦେବେ କି ? ଥାନାରେ ଦେଲେ ଘଟଣା ଚାରିଆଡେ ବ୍ୟାପିଯିବ...

ପୁଣି ସ୍କୁଟରରେ ଷ୍ଟାର୍ଟଦେଲେ ସମରେନ୍ଦ୍ର । ବସଷ୍ଟାଣ୍ଡ, ଷ୍ଟେସନ ସବୁଆଡ଼େ ତନ୍ନ ତନ୍ନ କରି ଖୋଜିଲେ । ବାଟରେ ଚିହ୍ନା ପରିଚିତ ଯାହାକୁ ଦେଖିଲେ ପଚାରିଲେ । ସମସ୍ତେ ସେହି ଏକ ପ୍ରକାରର ଉତ୍ତର ଦେଲେ । ସେ କଣ କରିବେ ଜାଣିପାରିଲେ ନାହିଁ । ଏଣେ ସମୟ ହୋଇଯାଉଛି ଟ୍ରେନର । ଯେମିତି ହେଲେ ରାତି ଦଶଟା ପୂର୍ବରୁ ତାଂକୁ ଫେରିବାକୁ ପଡ଼ିବ । ଘରେ ସୁଜାତାଙ୍କ ଅବସ୍ଥା ଯେ କଣ ହେଉଥିବ ସେ ଅନୁମାନ କରିପାରୁଥିଲେ । ଯଦି ନମିତା ଅନ୍ୟ କିଛି କରିବସେ ତ ସଇଲା କଥା । ସମାଜରେ କାହା ପାଖରେ ମୁହଁ ଦେଖାଇବେ ସେ । ବାବୁଲାଟା ଘରେ ଖାଲି ତ ଘାଇଲା ବାଘ ପରି ହେଉଥିବ । କହୁଥିବ 'ଆସୁ ସେ ଆଜି.. ତାର ଦିନେକି ମୋର ଦିନେ । ବାପା ମାମା ତାକୁ ମୁହଁ ବଢାଇ ଏମିତି କରିଛନ୍ତି ।' ଭାବିଲେ ଖବରଟାକୁ ରେଡ଼ିଓ, ଟି.ଭି., ପେପରରେ ଦେଇଦେବେ କି ? ନା ଥାଉ ସେକଥା ପଛକୁ ଥାଉ । ଘର ଭିତରର କଥା । ବାହାରକୁ ଫୁଟି ଆସିଲେ ଅସୁନ୍ଦର । ସେ ସ୍କୁଟର ପଛକୁ ଫେରାଇଲେ । ଘର ମୁହାଁ ହେଲେ ।

ପରିସ୍ଥିତି ଯାହା ହେଉନା କାହିଁକି ସାମନା କରିବାକୁ ପଡ଼ିବ । ଏ ଦୁନିଆରେ ସଜ ଫୁଲରେ ପୋକ ପକାଇ ଦେବାକୁ ଲୋକେ ଚାହିଁ ବସିଛନ୍ତି । ସଫା ପାଣିକୁ ଗୋଳିଆ କରିଦେବାକୁ ଲୋକଙ୍କର ଗୋଟାଏ ଅଭ୍ୟାସ । ଘରକୁ ଯାଏ । କିଛି ଫୋନ କିମ୍ୱା ଖବର ଆସିଥିବ ହେଲେ.. ।

ଘରକୁ ଫେରି ଦେଖିଲେ ଅବସ୍ଥା ସାଂଘାତିକ । ଗେଟ ପାଖରୁ ସୁଜାତାଙ୍କ ବିରାଟ ସ୍ୱରରେ କାନ୍ଦିବାଟା ଶୁଭାଗଲା । ତା ସାଙ୍ଗକୁ ବାବୁଲାର ପାଟି 'ମୁଁ କହୁଛି ପରା ବାହାଘର ଜଲଦି କର, ଏବେ ସମ୍ଭାଳ, ନେଡ଼ିଗୁଡ଼ କହୁଣିକୁ ବୋହି ଗଲାଣି । ବାପା ତାଙ୍କର ସ୍ୱପ୍ନ ଦେଖିବାରେ ବ୍ୟସ୍ତ ଆଉ ତମେ ସବୁ ସେଇ ସ୍ୱପ୍ନରେ ଭାସି ଯିବା ପାଇଁ ବ୍ୟସ୍ତ । ଧନ୍ୟ ଏ ଦୁନିଆଁ ।' ଘର ଭିତରକୁ ପଶୁ ପଶୁ କାନ୍ଦି କରି ସୁଜାତା ଚିଠି ଖଣ୍ଡିଏ ତାଙ୍କୁ ଧରାଇ ଦେଇ କହିଲା 'ଏଇ ଚିଠି ଖଣ୍ଡିକ ନମିତାର ତକିଆ ତଳୁ ମିଳିଲା ।' ସମରେନ୍ଦ୍ର ପଢ଼ିଲେ 'ମାମା ମତେ ଭୁଲ ବୁଝିବନି । ଆମ କଲେଜର ଆଥଲେଟିକ୍ ଟିଚର ଅମରେନ୍ଦ୍ର ଚଉଧୁରୀ । ମୁଁ ଆଜି କୋର୍ଟରେ ରେଜେଷ୍ଟ୍ରୀ ମ୍ୟାରେଜ କରୁଛି - ବାପାଙ୍କୁ କହିଦେବ ମୋର ଭୁଲକୁ କ୍ଷମା କରିଦେବେ । ମୁଁ ତାଙ୍କ ଇଚ୍ଛାକୁ ଚରିତାର୍ଥ କରିପାରିଲି ନାହିଁ । ଇତି ତୁମର ନମି ।।'

❖

# ସଂଯୋଗ

ବହୁ ପରିଶ୍ରମ ପରେ 'ସଂଯୋଗ' ସଂସ୍ଥାର ଠିକଣା ଯୋଗାଡ଼ କରି ପାରିଥିଲେ ସାମନ୍ତରାୟ ଦମ୍ପତି । ରାଉରକେଲାରେ ତାଙ୍କର ଚାକିରି ଜୀବନର ତିରିଶ ବର୍ଷ ବିତିଗଲାଣି । ସାଧାରଣ କର୍ମଚାରୀରୁ ଅଫିସର । ବେଶ୍ କିଛି ଲମ୍ବା ଯାତ୍ରା ଦେଖି ଯିବାକୁ ପଡ଼ିଛି ବିକାଶ ବାବୁଙ୍କୁ । ଅବସର ପାଖେଇ ଆସୁଛି । ଦେହର ଭୂଗୋଳରେ ପ୍ରୌଢ଼ ଅବସ୍ଥାର ସୂଚନା ମିଳିଲାଣି, ହେଲେ ଏକମାତ୍ର କନ୍ୟାର ବିବାହ ହୋଇ ପାରିନି । ରାଉରକେଲା ଭଳିଆ ଜାଗାରେ ଥାଇ ମଧ ମନଲାଖି ବରପାତ୍ରଟିଏ ଯୋଗାଡ଼ କରି ପାରିଲେନି । ଏଥିପାଇଁ ସ୍ୱାମୀ ସ୍ତ୍ରୀ ଆପ୍ରାଣ ଉଦ୍ୟମ କରିଛନ୍ତି । ହେଲେ ଭଲ ମଧଘିଟିଏ ଯୋଗାଡ଼ କରିପାରି ନାହାନ୍ତି । ମଝିରେ ମଝିରେ ଅନେକ ଆସିଛନ୍ତି, ଆଶ୍ୱାସନାର ବାଣୀ ଶୁଣାଇ ଦେଇ ଯାଇଛନ୍ତି । ବେଶ୍ କିଛି ଅର୍ଥ ମଧ ସେମାନେ ନେଇଛନ୍ତି, ହେଲେ ଉପଯୁକ୍ତ ବରପାତ୍ରଟିଏ ଯୋଗାଡ଼ କରି ପାରିନାହାନ୍ତି । ଝିଅଟି ମଧ ଦେଖିବାକୁ ବେଶ୍ ସୁଶ୍ରୀ, ସୁନ୍ଦରୀ । ସମ୍ପୂର୍ଣ୍ଣ ଗୋରା ନ ହେଲେ କ'ଣ ହେଲା ଭଲ ଝିଅଟିର ସବୁ ଯାକ ଲକ୍ଷଣ ତାଠାରେ ଶୋଭାପାଉଛି । ତନୁ ପାତଳୀ ଚେହେରା ସାଙ୍ଗକୁ ଟଣା ଟଣା ଆଖି, ଶୁଆପକ୍ଷୀଆ ନାକ, ଆଉ ବେଶ୍ ଲମ୍ବା ଲମ୍ବା କେଶ । ଦୂରରୁ ଦେଖିଲେ ଯେ କୌଣସି ଲୋକ ହଠାତ୍ ଆଖି ଫେରାଇ ପାରିବ ନାହିଁ । ଏ ଭଳିଆ ଝିଅ ପାଇଁ ପୁଣି ବରର ଅଭାବ ? ଅନେକ କୁହନ୍ତି ' ଭଲ ଘର, ଭଲ ବର ଭାଗ୍ୟରେ ଥିଲେ ହିଁ ମିଳେ' । ଆଉ କେହି କେହି କୁହନ୍ତି 'ମଣିଷ ହାତରେ କିଛି ନାହିଁ ସବୁ ଜିନିଷ ସମୟ ଆସିଲେ ଆପେ ଆପେ ହୋଇଯାଏ, ଏଣୁ ଆପଣଙ୍କ ଝିଅର ବାହା ରାଶି ଫିଟିନି - ଆପଣ ଦେଖନ୍ତୁ ଝିଅର ସମୟ ଆସିଲେ ବର ଆସି ଆପେ ଧରାଦେବ ।' କେତେ ଦିନ ଏ ସବୁ ନୀତିବାଣୀ ଶୁଣି ଚାଲିଥିବେ ବିକାଶ ବାବୁ । ଅଫିସ ସମୟତକ ବେଶ୍ ଭଲରେ କଟେ । ଅଫିସରୁ ଫେରିଲେ ଶ୍ରୀମତୀଙ୍କ ଶବ୍ଦର ଆକ୍ରମଣ ଆରମ୍ଭ ହୋଇଯାଏ - ' କ'ଣ ବୁଝିଲ .. ଝିଅର ବୟସ ବଢ଼ୁଛି - ଗୋଟିଏ ବୋଲି ଝିଅ - ଆଗକୁ ପଛକୁ କେହି ନାହିଁ - ତା'ର ରିଟାୟାର ସମୟ ପାଖେଇ ଆସୁଛି । ଏଥର ଛୁଟି ନିଅ, ଚାଲ ଆଉ କାହା ପାଖକୁ ଯିବା ହୁଏତ କିଛି ସନ୍ଧାନ ମିଳିପାରେ । ଶେଷରେ କେହି ଜଣେ ଏହି ସଂଯୋଗ ସଂସ୍ଥାର ଖବର ଦେଲା । ସେଠି କୁଆଡେ ସବୁ କିଛି ତୁରନ୍ତ ସମାଧାନ ହୋଇଯାଏ, ଥରେ ଯାଇ ଦେଖନ୍ତୁ ନା ?'

ପିଲାଟି ଦିନୁ 'ଶିଖା' ଏକମାତ୍ର ଝିଅ ହୋଇଥିବାରୁ ବେଶ୍ ଗେହ୍ଲାରେ ବଢ଼ିଛି । ବିକାଶ ବାବୁ ଏବଂ ସୁଧା ଦେବୀ ପୁଅଟିଏ ପାଇଁ ଯେ ଚେଷ୍ଟା କରି ନଥିଲେ

ସେ କଥା ନୁହେଁ । ହେଲେ ଡାକ୍ତରବାବୁ ସିଧା ମନା କରିଦେଲେ । 'ମାଡାମ'ଙ୍କ ଗର୍ଭାଶୟରେ ସମସ୍ୟା ଅଛି - ଦ୍ୱିତୀୟ ସନ୍ତାନର ଜନ୍ମ ବିପଜ୍ଜନକ ହୋଇପାରେ । ବାସ୍ ହୋଇଗଲା, ଝିଅଟିଏ ହେଉ ବା ପୁଅଟିଏ ହେଉ - ଭଲରେ ରହୁ । ଶିଖା ମଧ ତା ବାପା ମାଆଙ୍କ ଆଦର୍ଶରେ ଅନୁପ୍ରାଣିତ । ଶିଖା ଶୁଣିଥିଲା ତା'ର ବାପା ତା ମାଆଙ୍କୁ ବିନା ଯୌତୁକରେ ବିବାହ କରିଥିଲେ ସେ ମଧ ତା'ର ବାପା ମା'ଙ୍କୁ ସିଧା ଜଣାଇ ଦେଇଛି, ଯେଉଁ ବର ଯୌତୁକ ଦାବି କରିବ ସେଠି ବାହାଘର ହୋଇ ପାରିବ ନାହିଁ । ଶିଖାର ଏ ଭଳିଆ ନିଷ୍ପତ୍ତି ସାମନ୍ତରାୟ ଦମ୍ପତିଙ୍କୁ ଆହୁରି ଅସୁବିଧାରେ ପକାଇ ଦେଇଛି । କାରଣ ଆଜିକାଲି ପ୍ରଥମେ ଯୌତୁକ ତା ପରେ ଝିଅ ଦେଖା । ଏଭଳିଆ ଏକ ପରିସ୍ଥିତିରେ ପଡ଼ି ସେମାନେ କ'ଣ କରିବେ କିଛି ସ୍ଥିର କରି ପାରି ନାହାନ୍ତି । ସବୁବେଳେ ଠାକୁରଙ୍କ ପାଖରେ ମାନସିକ କରି କୁହନ୍ତି, ମୋ ଝିଅ ପାଇଁ ତା'ର ମନଲାଖି ବର ମିଳିଯାଉ । ଏଭଳିଆ ମାନସିକ ଦୁଶ୍ଚିନ୍ତା ନେଇ ଗତି କରୁ କରୁ ସନ୍ଧାନ ମିଳିଯାଇଛି ଏହି 'ସଂଯୋଗ' ସଂସ୍ଥାର ।

ଅନେକ ଦିନ ଧରି କାମର ଚାପରେ ସୁଧାଦେବୀ ନିଜ ବାପାଙ୍କ ଘରକୁ ଆସିପାରିନଥିଲେ । କୁଆଡ଼େ ଝିଅ ଚିନ୍ତା ... ତା' ପରେ ବିକାଶଙ୍କ ଚାକିରି । 'ସଂଯୋଗ' ସଂସ୍ଥାର ଅଫିସ ଭୁବନେଶ୍ୱରରେ ବୋଲି ବିକାଶଙ୍କ ଠାରୁ ଶୁଣି ସେ ଖୁସିରେ ନାଚି ଉଠିଲେଣି - ଦୀର୍ଘ ଦୁଇ ବର୍ଷ ପରେ ବାପା ବୋଉଙ୍କ ସାଙ୍ଗରେ ଦେଖା ହେବ - ବାପା ଅବସର ନେଲେଣି - ବୋଉର ମଧ ରକ୍ତଚାପ ହୋଇଲାଣି, ଅନେକ ଚିଠି ଦେଲାଣି । ଏଥର ଦୁଇ କାମ ଏକା ଥରକେ ହେବ । 'ଦିଅଁ ଦେଖା, କଦଳୀ ବିକା' ଏକା ସାଙ୍ଗରେ ହେବ । ବାପା ବୋଉଙ୍କ ସାଙ୍ଗରେ ଦେଖା ମଧ ହେବ । ଆଉ ଝିଅ ବାହାଘର କଥା ବୁଝା ମଧ ହେବ । ବିକାଶ ଛୁଟି ପାଇଁ ଦରଖାସ୍ତ କରି ସାରିଛନ୍ତି । ଶିଖା ମଧ ଅଜା ଆଇଙ୍କ ସହ ଦେଖା କରିବା ପାଇଁ ପାଗଳ - ସେ ମଧ ପ୍ୟାକିଂ ଆରମ୍ଭ କରି ଦେଇଛି ।

ଦୀର୍ଘ ଚାରିଶହ କିଲୋମିଟରର ବସ୍‌ଯାତ୍ରା । ରାତି ସାରା ବସ୍ ଭିତରେ । ପ୍ରାୟ ବାର ଘଣ୍ଟା ପରେ ସେମାନେ ପହଞ୍ଚିଲେ ଭୁବନେଶ୍ୱରରେ । ବସ୍‌ଷ୍ଟାଣ୍ଡକୁ ପାଛୋଟି ନେବା ପାଇଁ ଆସିଥିଲେ ସୁଧାଦେବୀଙ୍କ ବାପା ମାଆ । ପ୍ରଥମରୁ କାନ୍ଦ ଆରମ୍ଭ କରି ଦେଲେ । ସୁଧାଦେବୀଙ୍କ ମାଆ ଝିଅଟା ମୋର କେଡ଼େ କଳା ପଡ଼ିଗଲାଣି - ମୁଁ ଜାଣେ ପରା ତୋର ଖାଇବା ପିଇବା ଜମାରୁ ଠିକଣା ନଥିବ ... ଯଲଦି ଚାଲ ... ବିଚରାକୁ ଖୁବ୍ ଭୋକ ଲାଗୁଥିବ । ଶିଖା କିନ୍ତୁ ଛୋଟ ପିଲାଙ୍କ ପରି ଅଜାଙ୍କ କାନ୍ଧରେ ଝୁଲି ପଡ଼ିଲାଣି । 'ଓଃ ଶିଖା ... ତୁ ବଡ଼ ହେଲୁଣି ... ଅଜାଙ୍କୁ ଟିକେ ଛାଡ଼ ... ସେ ପଡ଼ିଯିବେ

ଯେ...।' ବିକାଶ ବାବୁଙ୍କ ତାଗିଦ୍‌କୁ ଶୁଣି ହସି ଦିଏ ଶିଖା 'ତମେ ତାତି ଚୁପ୍ ରୁହ ତ । ସତରେ ଅଜା ତମେ ତ ରିଟାୟର କରିଛ ବୋଲି ଜମାରୁ ଜଣା ପଡୁନ' । ସୁଧାଂଶୁ ବାବୁ ହସି ହସି କହୁଥାନ୍ତି ଦେଖୁନୁ ତୋ ଆଈ କେମିତି ଖୁଆଇ ପିଆଇ ମୋତେ ମୋଟା କରିଦେଇଛି ... ତାର ଏଇ ମୋଟା ପାଇଁ ବ୍ଲଡ ପ୍ରେସର ବାହାରିଗଲାଣି ଆଉ ମୋର ବ୍ଲଡ ପ୍ରେସର ବାହାରିଗଲେ ଏକା ଥରକେ ସାଙ୍ଗ ହୋଇ ମଶାଣିକୁ .... ।' 'ଓଃ ଓଃ ଅଜା ତମର ତ ସବୁବେଳେ ସେଇ କଥା... ହଉ ହଉ ଘରକୁ ଗଲେ - ମୁଁ ଯାଇ ଟିକିଏ ବିଶ୍ରାମ ନେବି ତା ପରେ ଯାଇ ଯେଉଁକଥା ।'

ଘରେ ପହଞ୍ଚି ସୁନନ୍ଦା ଦେବୀ କାମରେ ଲାଗିଗଲେ । ଏତେ ଦିନ ପରେ ଝିଅ ଜୋଇଁ ଘରକୁ ଆସିଛନ୍ତି । ଘରଟା ଆଜି ପୂରିଲା ପୂରିଲା ଲାଗୁଛି । ମାଙ୍କ ସାଙ୍ଗରେ ଗପୁ ଗପୁ ସୁଧାଦେବୀ ଶିଖାର ବାହାଘର ପ୍ରସଙ୍ଗ ଉଠାଇଲେ । ଝିଅର ଯିଦ୍ କଥା ମଧ କହିଲେ - ସୁନନ୍ଦା କହିଲେ ' ଆମ ଜୋଇଁ ତ ତତେ ବାହା ହୋଇଥିଲେ ବିନା ଯୌତୁକରେ ଆଉ ସେ ପରା ତଙ୍କରି ଝିଅ - କଥାରେ ଅଛି ଝିଅମାନେ ବାପାର ଗୁଣ ନେଇଥିଲେ ଖୁସିରେ ରହନ୍ତି । ତୁ ଦେଖିବୁ ମାଆ, ଝିଅ ଆମର ଠିକ୍ ବର ପାଇବ ଏବଂ ଆରାମରେ ରହିବ । ଡ୍ରଇଁ ରୁମ୍‌ରେ ବିକାଶ ବାବୁ ଶ୍ୱଶୁରଙ୍କ ସାଙ୍ଗରେ ଗପର ପେଡ଼ି ମେଲି ଦେଇଥାନ୍ତି । ଦୁନିଆ ଯାକର କଥା, ଚାକିରି ବେଳର କଥା, ଚାକିରି ସରିବା କଥା ଆହୁରି କେତେ କଣ ? ପ୍ରସଙ୍ଗ କ୍ରମେ ସୁଧାଂଶୁ ବାବୁ ପଚାରିଲେ ଶିଖା ବିଷୟରେ । ବିକାଶ ବାବୁଙ୍କ ଠାରୁ ସବୁ ଶୁଣିଲା ପରେ ସେ କହିଲେ 'ଠିକ୍ କଥା ଆଜିକାଲି ଯୁଗରେ ସର୍ବୁଠୁ ଭାଗ୍ୟର କଥା ହେବ ଯଦି ଶିଖା ତାର ମନ ଲାଖି ପାତ୍ରଟିଏ ପାଇବ - ଖାଲି ପଇସା ଥିଲେ ଯେ ଭଲ ଜୋଇଁ ମିଳିବେ ସେ କଥା ନୁହେଁ । ତମର ନିଷ୍ଠା ଆଉ କର୍ମର ଫଳ ହିଁ ଶିଖାକୁ ଉପଯୁକ୍ତ ବରପାତ୍ର ମିଳିବାରେ ସାହାଯ୍ୟ କରିବ । ଆଜିକାଲି ଯୌତୁକ ନେଇ କେତେ ନାରକୀୟ କାଣ୍ଡ ଘଟିଯାଉଛି । ତମେ ତ କାଲି ଖବରରୁ ସବୁ ଶୁଣିଥିବ । ଏଇତ ମାସେ ତଳେ ଆମରି ପଡ଼ିଶା ଘରେ ଏଭଳିଆ ଗୋଟେ ଘଟଣା ଘଟିଯାଇଛି । ବାପା ମାଆ ଝିଅର ବାହାଘର ଠିକ୍ କରିଥିଲେ ଖୁବ୍ ଥିଲାବାଲା ଘରର ପୁଅ ସାଙ୍ଗରେ । ପୁଅଟି ମଧ ଇଞ୍ଜିନିୟର । ଭଲ ଚାକିରି କରିଥିଲା... ପୁଅ ବାଲା ମଧ ନଛୋଡ ବନ୍ଧା... ସବୁ ଠିକ୍ ଠାକ୍ ହୋଇସାରିଲା ପରେ ସେମାନେ ଡିମାଣ୍ଡ କଲେ ନୂଆ ମାରୁତି କାର... ଝିଅ ବାଲା ଅତି ନମ୍ରତାର ସହିତ ମନା କରିଦେଲେ । ପୁଅ କିନ୍ତୁ ଜିଦ୍ ଧରିଲା ସେଇ ଝିଅକୁ ବାହା ହେବ । ପୁଅ ଜିଦ୍‌କୁ ସେମାନେ ରକ୍ଷା କରି ବାହାଘର ସିନା କରିଦେଲେ କିନ୍ତୁ ଝିଅଟି ଶାଶୁ ଘରେ ବହୁ ନିର୍ଯ୍ୟାତନାର ଶୀକାର ହେଲା । ପୁଅଟିର

ଟୁରିଂ ଚାକିରି ହୋଇଥିବାରୁ ସେ ବେଶୀ ସମୟ ଘରେ ରହିପାରୁ ନଥିଲା । ଝିଅଟି ବିଚରା ସବୁ କଥା ତାକୁ ଖୋଲିକି କହି ପାରୁନଥିଲା । ଫଳରେ ଅତ୍ୟନ୍ତ ଯନ୍ତ୍ରଣାରେ ଜର୍ଜରିତ ହୋଇ ଦିନେ କେହି ନଥିଲା ବେଳେ ସେ ଆତ୍ମହତ୍ୟା କରିଦେଲା । ଏବେ ପୁଅଟିର ବାପା ମାଆ ବନ୍ଧା ହୋଇ ଜେଲ୍ ଖଟୁଛନ୍ତି । ଝିଅଟିର ବାପା ମାଆଙ୍କ ମନର ଅବସ୍ଥା ତୁ ବୁଝି ପାରୁଥିବୁ । ଏଣୁ ଏସବୁ ଭାଗ୍ୟର କଥା । ମୋର ଆଶା ଏବଂ ବିଶ୍ୱାସ ଶିଖାର ସେମିତି କିଛି ହେବ ନାହିଁ , ଏବଂ ସେ ଯେଉଁ ନିଷ୍ପତ୍ତି ନେଇଛି ଠିକ୍ ହିଁ କହୁଛି । ଯେଉଁଠି ଅର୍ଥର ମୋହ ସେଇଠି ଅନର୍ଥ ହିଁ ହୁଏ । ମଣିଷର ଲୋଭ ହିଁ ତା'ର କାଳ ହୁଏ । ଆଉ ଏବର ସମୟ ବଦଳି ଯାଇଛି ଏଠି ସବୁ କିଛି ପଇସାରେ ତଉଲା ଯାଏ ।

ପ୍ରଫେସର ମହାପାତ୍ରଙ୍କ 'ସଂଯୋଗ' ଅଫିସରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ୬ଟା ହେଲାଣି । ପ୍ରଫେସର ମହାପାତ୍ରଙ୍କ ଜୀବନ ବିଷୟରେ ବୁଝିବାରୁ ଯାହା ଜଣା ପଡ଼ିଲା ସେ ଆଗରୁ ଅଧ୍ୟାପନା କରୁଥିଲେ । ଏବେ ସ୍ୱେଚ୍ଛାକୃତ ଅବସର ନେଇ ଏହି ଜ୍ୟୋତିଷବିଦ୍ୟା, କପାଳ ପଠନ, ଏବଂ ପ୍ରଜାପତି ଘଟ ସୂତ୍ର କାମରେ ମନୋନିବେଶ କରଛନ୍ତି ଏବଂ ଅଳ୍ପ ଦିନରେ ଏହି କାର୍ଯ୍ୟରେ ଅଭୂତପୂର୍ବ ସଫଳତା ହାସଲ କରିଛନ୍ତି । ସେବା ଅଫିସ ପାଖରେ ପହଞ୍ଚି ବିକାଶ ଏହାର ଚାକ୍ଷୁସ ପ୍ରମାଣ ପାଇଗଲେ । ବେଶ୍ କିଛି ଗାଡ଼ି ମଟର ଜମିଛି ଘର ପାଖରେ । ପ୍ରଥମେ ଅଭ୍ୟର୍ଥନା ଗୃହକୁ ବିକାଶବାବୁ ଏବଂ ସୁଧାଦେବୀଙ୍କୁ ନିଆଗଲା । ସେଠାରେ ଥିବା କର୍ମଚାରୀ ଜଣକ ତାଙ୍କୁ ନେଇ ଉପଯୁକ୍ତ ସ୍ଥାନରେ ବସାଇଦେଲେ । ତାଙ୍କର ନାଁ ଗାଁ ଇତ୍ୟାଦି ଟିପି ନେଲେ ଏବଂ ତାଙ୍କୁ ଟୋକୋନ ଖଣ୍ଡିଏ ଦେଲେ । ବିକାଶ ବାବୁ ଦେଖିଲେ ସେଥିରେ ୧୨ ନମ୍ବର ଲେଖା ହୋଇଛି । ସେ ହଠାତ୍ କିଛି ବୁଝି ପାରିଲେ ନାହିଁ । କର୍ମଚାରୀ ଜଣକ ବୁଝାଇ ଦେଲେ 'ସାର୍ ! ଆପଣଙ୍କ ଆଗରୁ ଆହୁରି ଏଗାର ଜଣ ଆସିଛନ୍ତି ।' ବିକାଶ ମନେ ମନେ ଖୁବ୍ ଗୁଡାଏ ବିରକ୍ତ ହେଲେ ମଧ୍ୟ ହଠାତ୍ କିଛି କହିପାରିଲେ ନାହିଁ । ତାଙ୍କର ମନେ ପଡ଼ିଗଲା ରାଉରକେଲା କଥା । ସୁଧାଦେବୀଙ୍କୁ ମେଡ଼ିକାଲ ଚେକ୍‌ଅପ୍ ପାଇଁ ଜଣେ ପ୍ରସୂତି ବିଦ୍ୟାର ବିଶେଷଜ୍ଞ ପାଖକୁ ଯାଇଥିଲେ । ସେଠି ମଧ୍ୟ ତାଙ୍କୁ ଏହି ପ୍ରକାରର ଯୋକୋନ୍ ଧରାଇ ଦିଆଯାଇଥିଲା ଏବଂ ତାଙ୍କର ପାଳି ପଡ଼ିବା ପାଇଁ ପ୍ରାୟ ଦୁଇ ଘଣ୍ଟା ଲାଗିଯାଇଥିଲା । ତେବେ ଯେ ତ ହସପିଟାଲ ନୁହେଁ ବା କାହାର ପ୍ରାଇଭେଟ କ୍ଲିନିକ୍ ନୁହେଁ । ଏଠି ପୁଣି ଟୋକୋନ୍ ... ପୁଣି ଅପେକ୍ଷା..., ଓଃ ସତରେ କ'ଣ ବା କରାଯିବ ଆସିଯାଇଛୁ ଯେତେବେଳେ... ହଠାତ୍ ଏଇ ସମୟରେ ତାଙ୍କ ପଛପଟୁ କିଏ ଜଣେ ତାଙ୍କୁ ଧରି ହଲାଇ

ଦେଲା । ଚମକି ପଡ଼ିଲେ ବିକାଶ ବାବୁ - ନିଜର ସମ୍ବିତ ଫେରି ପାଇଲେ । ପଛକୁ ବୁଲି ପଡ଼ି ଦେଖନ୍ତି ତ ମନୋଜ... । ' ଆରେ ମନୋଜ ତୁ ଏଠି... ।' 'ଆରେ ବିକାଶ ତୁ ସବୁ ଭୁଲି ଗଲୁଣି ନା କ'ଣ ... ମୁଁ ପରା ଏଠି କଲେଜରେ ଅଧ୍ୟାପକ ... ତୁ ସିନା ରାଉରକେଲାରେ ମଜାରେ ରହିଗଲୁ ଆମେ କ'ଣ ଆଉ ରାଜଧାନୀ ଛାଡ଼ିବୁ ନା କ'ଣ...? କଳେ ବଳେ କଉଶଳେ ରାଜଧାନୀକୁ ଜାବୁଡ଼ି ଧରିଛୁ ଦୀର୍ଘ ୧୨ ବର୍ଷ ହେଲା । ଆଉ ଭାଉଜଙ୍କ ଖବର କ'ଣ ?' ବିକାଶ ସୁଧାକୁ ଚିହ୍ନାଇ ଦେଲା 'ମନୋଜ ମୋର ପିଲା ଦିନରେ ସାଙ୍ଗ ।' ସୁଧାଦେବୀ ନମସ୍କାର କଲେ । 'ମୁଁ ଜାଣେ ପରା ଭାଉଜ ... । ଆରେ ତମେ ସବୁ ଏତେ ବ୍ୟସ୍ତ ବିବ୍ରତ କାହିଁକି ? ଏଠିକୁ ଯିଏ ଥରେ ଆସେ ସେ ଫେଲ ମାରେନି ଏବଂ ସେ ବାରମ୍ବାର ଏଠିକୁ ଆସିବାକୁ ଚାହିଁବ ଆଉ ଟା ଛଡ଼ା ବାହାଘର ସମସ୍ୟା କାହାର ନାହିଁ କହିଲ ? ନହେଲେ ପ୍ରଫେସର ମହାପାତ୍ର ଅଧ୍ୟାପକ ଚାକିରି ଛାଡ଼ି ଏ ଧନ୍ଦାରେ ପଶିଥାନ୍ତେ ? ଅତ୍ୟନ୍ତ ପାରିବାର ଲୋକ - ଏଇ ଦେଖନ୍ତୁ ମୋର ଝିଅ ବାହା ଘର ଜମାରୁ ହେଇ ପାରୁ ନଥିଲା ... ପ୍ରଫେସର ମହାପାତ୍ର ମୋ କପାଳରୁ କ'ଣ ପଢ଼ିଲେ କେଜାଣି ... କହିଲେ ବ୍ୟସ୍ତ ହୁଅନ୍ତୁ ନାହିଁ ଦେଖନ୍ତୁ ଆପଣଙ୍କ ରେଖା କହୁଛି ଆସନ୍ତା ତିନିମାସ ଭିତରେ ଝିଅର ବାହାଘର ଅମୁକ ଯାଗାରେ ଅମକ ଦିନ ହୋଇଯିବ । ଆଉ ତୁ ବିଶ୍ୱାସ କରିବୁ ନାହିଁ ତାଙ୍କ କହିବା ମୁତାବକ ମୁଁ ଖୁବ୍ ଭଲ ଜୋଇଁ ପାଇ ବାହାଘର କରିଦେଇଛି ।

'ଆଉ ଏଠି ଯେତେ ଲୋକ ଦେଖୁଛୁ ସମସ୍ତଙ୍କର ସେଇ ସମସ୍ୟା - ପୁଅ ବାହାଘର କିମ୍ବା ଝିଅ ବାହାଘର । ସତେ ମୁଁ ଆସିଛି ମୋ ପୁଅ ସରୋଜର ବାହାଘର ପାଇଁ । ପୁଅଟା ଜମାରୁ ରାଜି ହେଉନି ବାହା ହେବା ପାଇଁ ... ଏବେ ଆମେରିକା ଗଲାଣି ତିନି ବର୍ଷ ହେବ ... ଆମର ଡର କାଳେ ସେଇଠି ସିଏ ଆମେରିକାରେ କୌଣସି ତରୁଣୀକୁ ବାହା ହୋଇ ରହିଯିବନି ତ ? ତା ହେଲେ ତ ଆମର ଭେଳା ବୁଡ଼ିଲା... ।' ବିକାଶ ଲକ୍ଷ୍ୟ କଲା ତା ହାତରେ ମଧ ଗୋଟାଏ ଟୋକୋନ୍ । 'ଆରେ ମୋର ଦଶ ନମ୍ବର ... ତା ହେଲେ ତୋର ମୋର ପାଖା ପାଖି । ତୁ ଜମାରୁ ବ୍ୟସ୍ତ ହନା, ଠିକ୍ ଡାକ୍ତର ପାଖକୁ ଆସିଛୁ ଠିକ୍ ଔଷଧ ମିଳିଯିବ । ଥରେ ଚେଷ୍ଟା କରି ଦେଖ ନା ... ।' ସେତେବେଳକୁ ରାତି ବଢ଼ିବାରେ ଲାଗିଲାଣି, ସୁଧାଦେବୀଙ୍କୁ ଗୋଟିଏ ଜାଗାରେ ବସି କରି ବିରକ୍ତିଆ ଲାଗିଲାଣି । ସେଠିକାର ଅନ୍ୟ ଲୋକମାନେ ମଧ ବ୍ୟସ୍ତ ହେଉଛନ୍ତି । କିନ୍ତୁ କ'ଣ କରାଯିବ ? ପୁଅ ଝିଅଙ୍କୁ ଜନ୍ମ ଦେଇଛୁ ଯେତେବେଳେ ତାଙ୍କ ପାଇଁ କର୍ମ ତ କରିବାକୁ ପଡ଼ିବ ।

ଠିକ୍ ଏଇ ସମୟରେ ଭିତରୁ ଡକରା ଆସିଲା । ମନୋଜ ତର ତର ହୋଇ ଭିତରକୁ ପଶିଗଲା । ବିକାଶ ବାବୁ ଘଣ୍ଟା ଦେଖିଲେ ଆଠଟା ତିରିଶ, ଆଉ ଅଧ ଘଣ୍ଟା ପରେ ଅଫିସ ବନ୍ଦ ହୋଇଯିବ । ତାଙ୍କର ପାଳି ପଡ଼ିବ ତ ? ମନୋଜ ଯାହା କହିଥିଲା ଜଣକ ପାଇଁ ପ୍ରାୟ ୧୫/୨୦ ମିନିଟ୍ ସମୟ ଲାଗିଥାଏ । କାରଣ ସେ କ'ଣ ସବୁ ହିସାବ ନିକାଶ କରନ୍ତି । ତା ହେଲେ ସେଇ ହିସାବରେ ତାଙ୍କ ପାଳି ପଡ଼ିବ ରାତି ନଅଟାରେ । ସେ ଘରେ ପହଞ୍ଚିବେ ରାତି ଦଶଟାରେ । ସୁଧାଙ୍କ ଘରେ ସମସ୍ତେ ବ୍ୟସ୍ତର ସହିତ ଅପେକ୍ଷା କରିଥିବେ ... ଓଃ କି ଝାମେଲା । ବିକାଶ ବାବୁ ସୁଧାଙ୍କୁ ବୁଝାଇ ଦେଲେ ବାପା ମାଆ ହୋଇଛୁ ଯେତେବେଳେ ପିଲାଙ୍କ ପାଇଁ ଏତକ କଷ୍ଟ ତ ସ୍ୱୀକାର କରିବାକୁ ପଡ଼ିବ । ତା ପରେ ମନୋଜ ତ ବହୁତ କଥା କହିଗଲା ... ଦେଖାଯାଉ ଶିଖା ଭାଗ୍ୟରେ କ'ଣ ଅଛି । କିଛି ସମୟ ପରେ ମନୋଜ ଭିତର ଘରୁ ବାହାରିଲା ଏବଂ ହସ ହସ ମୁହଁରେ କହିଗଲା ... 'ସାର୍ ତ ବହୁତ କଥା କହିଲେ, ଏବେ ବାହା ରାଶି ଫିଟୁଛି । ଆସନ୍ତା ଡିସେମ୍ବର ମାସରେ ବାହାଘର ହୋଇଯିବ ଏବଂ ଓଡ଼ିଶାରେ ହିଁ ଓଡ଼ିଆ ଝିଅକୁ ବାହା ହେବ ।' ମନୋଜ ଏତକ କହିଦେଇ ଓ : କେ ବାଏ କହି ତା ଗାଡ଼ିରେ ଷ୍ଟାର୍ଟ ଦେଲା । ଏଇ ସମୟରେ ଏଗାର ନମ୍ବର ଭଦ୍ରଲୋକଙ୍କୁ ଡକରା ଆସିଗଲା ... । ବିକାଶ ବାବୁ ବାହାରକୁ ଆସି ଦେଖିଲେ କେବଳ ଦୁଇଖଣ୍ଡ ଗାଡ଼ି ଥୁଆ ହୋଇଛି । ସେଥିରୁ ଗୋଟିଏ ନିଶ୍ଚୟ ଏଗାର ନମ୍ବର ବାବୁଙ୍କର ଆଉ ଗୋଟିଏ ତାଙ୍କର । ଅଫିସର କର୍ମଚାରୀମାନେ ମଧ୍ୟ ଭିତର ବାହାର ହେଉଥାନ୍ତି । ସେମାନେ ଅପେକ୍ଷା କରୁଥାନ୍ତି କେତେବେଳେ ମୋ ପାଳି ପଡ଼ିବ । ସେମାନେ କବାଟ ବନ୍ଦ କରିବେ । ଅଫିସ ବନ୍ଦ ହେବ । ସେମାନେ ଘରକୁ ଯିବେ । ଏଇ ସମୟରେ ଭିତରୁ ଘଣ୍ଟି ବାଜିଲା ... କର୍ମଚାରୀ ଜଣକ ଡାକ ଛାଡ଼ିଲେ 'ବିକାଶ ସାମନ୍ତରାୟ.... ।' ବିକାଶ ଏବଂ ସୁଧା ଦେବୀ ଭିତରକୁ ପ୍ରବେଶ କଲେ ।

ପ୍ରଫେସର ମହାପାତ୍ର ତାଙ୍କୁ ଦେଖୁ ଦେଖୁ ପ୍ରଶ୍ନ କଲେ 'ଆପଣ ତିନି ବର୍ଷ ଧରି କଣ କରୁଥିଲେ ?' ହଠାତ୍ ବିକାଶ ବାବୁ ଲକ୍ଷ୍ୟ କଲେ ପ୍ରଫେସର ମହାପାତ୍ର ତା'ଙ୍କ ମୁହଁକୁ ସିଧାସଳଖ ଅନାଇଛନ୍ତି ...

ଜାତକ ଆଣିଛନ୍ତି .... ?

ଆଜ୍ଞା ହଁ .... ।

ରାଶି .... ?

କନ୍ୟା .... ।

ଲଗ୍ନ .... ?

ଆଛା ଝିଅର ବର୍ଣ୍ଣ ଶ୍ୟାମଳ ନା ?

ଆଜ୍ଞା ... ।

ସେ କ'ଣ ଆପଣଙ୍କ ଭଳିଆ ଜିଦ୍‌ଖୋର୍ ?

ବିକାଶ ବ୍ୟସ୍ତ ହୋଇ ପ୍ରଫେସରଙ୍କ ମୁହଁକୁ ଅନେଇଲେ ... ଇଏ କ'ଣ ସତରେ ତ୍ରୀକାଳଦର୍ଶୀ । ପ୍ରଫେସର ସେତେବେଳକୁ ଗୋଟେ କାଗଜରେ କଣ ସବୁ ଲେଖା ଲେଖି କରଥାନ୍ତି । ବିକାଶ ବାବୁ ସୁଧା ଦେବୀ ଭାବିଲେ ଲୋକଟା ନିଶ୍ଚୟ କିଛି ତନ୍ତ୍ରମନ୍ତ୍ର ଜାଣିଛି ନ ହେଲେ ମଣିଷର ଚରିତ୍ର ଏବଂ ହାବଭାବ ବିଷୟରେ କହୁଛି କେମିତି ? ଏଥର ପ୍ରଫେସର ମହାପାତ୍ର ମୁହଁ ଟେକି ସିଧା ଅନେଇଲେ ବିକାଶ ବାବୁଙ୍କୁ । 'ଏ ଝିଅର ବାହାଘର ଡିସେମ୍ବର ମାସରେ ହେବ । ଆପଣଙ୍କୁ ଏ ଚାରିମାସ ଅପେକ୍ଷା କରିବାକୁ ପଡ଼ିବ । ବରପାତ୍ର ବର୍ତ୍ତମାନ ବାହାରେ ଅଛି । ଆପଣ ଏବେ ଯାଆନ୍ତୁ ଝିଅ ବାହାଘର ପରେ ମତେ ଦେଖା କରିବେ । ହଁ ମଝିରେ ଆଉ ମୋତେ ଫୋନ୍ କରି ଡିଷ୍ଟର୍ବ କରିବେ ନାହିଁ .... ଏଥର ଆପଣ ଆସିପାରନ୍ତି ।' ଏଥର ଉଠୁ ଉଠୁ ବିକାଶ ବାବୁ ଏବଂ ସୁଧା ଦେବୀ ଏକା ସ୍ୱରରେ କହି ଉଠିଲେ 'ଆପଣଙ୍କ ତୁଣ୍ଡ ସୁତୁଣ୍ଡ ହେଉ ସାର୍ । ଆମେ ବାପା ମାଆ ଦୁଇଟା ଯାକ ତିନି ବର୍ଷ ଧରି ଯାହା ହଇରାଣ ହେଲୁଣି .... ।'

ଅଫିସ ବନ୍ଦ ହୋଇଗଲା ... ।

ପ୍ରଫେସର ମହାପାତ୍ର କ୍ଷୀପ୍ର ଗତିରେ ଉପର ମହଲାକୁ ସିଡ଼ିରେ ଉଠିଗଲେ । ବିକାଶ ଏବଂ ସୁଧା ବାହାରକୁ ଆସିଲେ । ତରତର ହୋଇ ଗାଡ଼ିରେ ଷ୍ଟାର୍ଟ ଦେଲେ । ସୁଧା ମନେ ମନେ ଭାବୁଥିଲା ଲୋକଟା କ'ଣ ସତରେ କିଛି ମନ୍ତ୍ର ତନ୍ତ୍ର ଜାଣିଛି ନା କ'ଣ ... ଆମକୁ ଦେଖିଲା ମାତ୍ରେ ଆମ ବିଷୟରେ ସବୁ କିଛି ଜାଣିଲାପରି କହିଗଲା ... । ବିକାଶ କିଛି ଉତ୍ତର ଦେଲେ ନାହିଁ । ଗାଡ଼ି ଚଳଉ ଚଳଉ ଭାବୁଥିଲେ ଶିଖା ବାହାଘର କଥା । ସତରେ ଯଦି ବାହାଘର ଡିସେମ୍ବର ମାସରେ ହୋଇଯାଏ ତେବେ ଏତେ ଜଲଦି ଏତେ ଗୁଡାଏ ଟଙ୍କା .... ପୁଣି ଯଦି ଜୋଇଁ ଟଙ୍କା ଡିମାଣ୍ଡ କରେ .... ତେବେ ତ ସଇଲା କଥା ।

ଠିକ୍ ଚାରିମାସ ପରେ ଏକ ଶୀତ ସକାଳରେ ଗୋଟେ ଧଳା ଆମ୍ବାସାଡ଼ର କାର ପ୍ରଫେସର ମହାପାତ୍ରଙ୍କ ଘର ଆଗରେ ବ୍ରେକ୍ କଷିଲା । କାର୍‌ର ଦରଜା ଖୋଲି ବାହାରି ଆସିଲେ ପ୍ରଥମେ ବିକାଶ ଏବଂ ମନୋଜ, ତା ପରେ ପରେ ସୁଧା ଆଉ ମାନସୀ ଏବଂ ତା ପଛକୁ ଲମ୍ବା ଓଢ଼ଣା ଟାଣି ବାହାରି ଆସିଲା ଶିଖା ଆଉ ସାଙ୍ଗରେ ତାର ଜୀବନ ସାଥୀ ସରୋଜ । ଶିଖା ମୁହଁରେ ଔଜ୍ଜଲ୍ୟ । ସକାଳର ସୂର୍ଯ୍ୟକିରଣରେ ଓଢ଼ଣା ତଳୁ ତା'ର ମୁହଁର ଔଜଲ୍ୟ ଆହୁରି ବଢ଼ି ଯାଇଥିଲା । ବିକାଶ ମନୋଜର ହାତ ଧରି କହିଲା 'ସତରେ ପ୍ରଫେସରଙ୍କ ଗଣନା ଏକଦମ୍ ନିର୍ଭୁଲ ।'

❖

# ଅବଶୋଷ

ବିଶ୍ୱମୋହନ ବାବୁ ଅସ୍ଥିର ଭାବେ ପଦଚାରଣ କରୁଥିଲେ । ଯେତେହେଲେ ସେ ଜଣେ ପୋଖତ ରାଜନିତିଜ୍ଞ ପୁଣି ଏ ସହରର ପୂର୍ବତନ ମେୟର । ବେଶ ନାମଙ୍କର ବ୍ୟକ୍ତିତ୍ୱ । ସହରରେ ତାଙ୍କର ସେତେବେଳର ଖ୍ୟାତି ବହୁତ । ହେଲେ ବର୍ତ୍ତମାନ ସେ ଜଣେ ପରାଜିତ ସୈନିକ । ଆଉ ତାଙ୍କର ନାଲିବତି ଗାଡ଼ି ନାହିଁ, ନା ଅଛି ବିରାଟ ଆଲିସାନ ବଙ୍ଗଳା । ଗାଦି ଛାଡ଼ିଲା ପରେ ସେ ଏ ସହରର ଗୋଟିଏ କଣକୁ ଉଠି ଆସିଛନ୍ତି । ତଥାପି ସହର ପ୍ରତି ମାୟା ଛାଡ଼ିନାହିଁ । ଏଣୁ ପୁରୁଣା ସହର ଉପରେ ବିପଦ ପଡ଼ିଲାବେଳେ ତାଙ୍କୁ କେହି ମନେ ପକାଉ ନାହାନ୍ତି - ଏହାହିଁ ବେଶ ଆଶ୍ଚର୍ଯ୍ୟର କଥା । ଦିନରାତି ୨୪ ଘଣ୍ଟା ଟେଲିଫୋନ ବାଜୁଥିବା ବେଳେ ବର୍ତ୍ତମାନ କୁଆ କୋଇଲିର ରାବ ନାହିଁ । ସବୁକିଛିର ଅନ୍ତ ଘଟିଛି । ଏବେ ସହରରେ ଗୋଟେ ଖବର ବ୍ୟାପିଛି ହେଲେ ସେ ସହରର ପୂର୍ବତନ ମେୟରଙ୍କ ସାଙ୍ଗରେ କେହି ଆଲୋଚନା କରିବାକୁ ଆସୁନାହାନ୍ତି ।

ଖବର ଆସି ପହଞ୍ଚିଛି - ଆତଙ୍କବାଦୀମାନେ ସହର ଭିତରକୁ ପ୍ରବେଶ କରିଛନ୍ତି... କେତେବେଳେ କଣ ଘଟିଯିବ ... ସହରରେ ଆତଙ୍କ ଖେଳିଯାଇଛି । ଲୋକେ ଘରୁ ବାହାରୁ ନାହାନ୍ତି - ପୋଲିସ ଗାଡ଼ି ସାଇରନ ବଜାଇ ସହର ପରିକ୍ରମା କରୁଛି - ଲୋକଙ୍କ ମନରେ ସାହସ ଜଗାଇଛି । ଆତଙ୍କବାଦୀମାନଙ୍କ ଯୋଜନା ଅନୁସାରେ ସେମାନେ ସହର ଭିତରେ ଯେଉଁ ଯେଉଁ ମହାମାନ୍ୟ ବ୍ୟକ୍ତିଙ୍କର ପ୍ରତିମୂର୍ତ୍ତୀ ରହିଛି ସେଗୁଡ଼ିକୁ ଭାଙ୍ଗି ଚୁରମାର କରିଦେବା ଏବଂ ପରେ ସହର ଭିତରେ ପ୍ରବେଶ କରି ଲୁଟ ତରାଜ ଘଟାଇବା । ଏ ଖବର ବିଶ୍ୱମୋହନ ବାବୁଙ୍କ କାନରେ ପଡ଼ିଛି । ତାଙ୍କର ଚିନ୍ତା... ସେମାନେ କେଉଁ କେଉଁ ମହାମାନ୍ୟ ବ୍ୟକ୍ତିଙ୍କର୍ ପ୍ରତିମୂର୍ତ୍ତୀକୁ ଧ୍ୱଂସ କରିବେ ... ସେ ଭିତରେ ତାଙ୍କର ନା ଅଛି କି ନାହିଁ ... ଯେତେହେଲେ ଏ ସହରର ସେ ପୂର୍ବତନ ମେୟର କି ନା ... ।

ବିଶ୍ୱମୋହନ ଫୋନ ଉଠାଇଲେ - 'ହାଲୋ ହାଲୋ ... ନଗର ଉନ୍ନୟନ ମନ୍ତ୍ରୀ ଅଛନ୍ତି କି ? ହାଲୋ ହାଲୋ କିଏ କହୁଛନ୍ତି - ମନ୍ତ୍ରୀ ଅଛନ୍ତି କି ?' ସାର ମୁଁ ତାଙ୍କର ପି.ଏ ଶଂକର୍ଷଣ କହୁଛି ସାର .... ସାର ଆପଣ କିଏ ଲାଇନ୍‌ରେ ଅଛନ୍ତି ?' .... 'ଆରେ ଶଂକର୍ଷଣ ମୁଁ ପରା ବିଶ୍ୱମୋହନ ... ତମେ ମୋର ପି.ଏ ଥିଲ ନା ... ।' 'ସାର ନମସ୍କାର.. ହଁ ସାର ଭଲ ଅଛନ୍ତି ସାର ... ?' 'ଆଚ୍ଛା ମୋର ମନ୍ତ୍ରୀଙ୍କ ସାଙ୍ଗରେ ଜରୁରୀ କଥା

ଥିଲା ...' 'ସାର ମନ୍ତ୍ରୀ ବର୍ତ୍ତମାନ ବହୁତ ବ୍ୟସ୍ତ... କିଛି ମେସେଜ୍ ଅଛି ସାର ?' 'ନାଇଁ ନାଇଁ ସେମିତି କିଛି ନାହିଁ ... ଆଚ୍ଛା ତମ ମନ୍ତ୍ରୀ ଗଲେ କୁଆଡ଼େ ?'' କୁଆଡ଼େ ଆଉ ଯିବେ ସାର୍' ଆପଣତ ଜାଣିଥିବେ - ଆତଙ୍କବାଦୀମାନେ ... ।' 'ଆରେ ସେଇଥିପାଇଁ ମୁଁ ତାଙ୍କୁ ଖୋଜୁଥିଲି ...' ' ସାର ମନ୍ତ୍ରୀ ଯାଇଛନ୍ତି ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ଜରୁରୀ ଆଲୋଚନା ପାଇଁ .. ମୁଖ୍ୟମନ୍ତ୍ରୀଙ୍କ ହାତରେ ଘରୋଇ ବିଭାଗ କି ନା ..' 'ଆରେ ସେ କଥା ମୁଁ କଣ ଜାଣେନା... ? ଆଚ୍ଛା ତମେ ତାଙ୍କୁ ଗୋଟେ ଜରୁରୀ ଖବର ଦେଇପାରିବ ?''କୁହନ୍ତୁ ସାର - ମନ୍ତ୍ରୀ ଆସିଲେ ମୁଁ ତାଙ୍କୁ କହିଦେବି ... ।'

' ଆଚ୍ଛା କଥା କଣ ଶଂକର୍ଷଣ ... ?'

' କୁହନ୍ତୁ ସାର ... । '

' ନାଇଁ ପରେ କଥା ହେବା ।'

' କୁହନ୍ତୁ ସାର ... ମୁଁ ପରା ଆପଣଙ୍କ ପୂର୍ବତନ ପି.ଏ. ।'

' ଆଚ୍ଛା ଶଂକର୍ଷଣ ... ତୁମେ ଖବର ପାଇଛ ସେମାନେ କୁଆଡ଼େ ଗୋଟେ ତାଲିକା କରିଛନ୍ତି ସବୁ ବଡ଼ ନେତାଙ୍କ ପ୍ରତିମୂର୍ତ୍ତୀକୁ ଭାଙ୍ଗି ଚୂରମାର କରିଦେବେ ... ।' 'ହଁ ସାର - ସହର ସାରା ତ ସେଇ ଖବର ଖେଳିଯାଇଛି - ଆଉ ସହର ଭିତରେ ପୋଲିସ କୋଣେ କୋଣେ ଜଗି ରହିଛନ୍ତି ... ହେଲେ ଆପଣ ସାର କଣ ଏଇଥିପାଇଁ ... ।

'ନାଇଁ ମୁଁ କଣ କହୁଥିଲି କି ମନ୍ତ୍ରୀଙ୍କ ପାଖରେ ସେ ସବୁର ହିସାବ ଥିବ ବୋଧେ ... ମାନେ ସେହି ମହାମାନ୍ୟ ବ୍ୟକ୍ତି ମାନଙ୍କର ... ।'

'ଥାଇପାରେ ସାର ... ମୁଁ ରହୁଛି ... ମନ୍ତ୍ରୀଙ୍କ ଫୋନ ଆସିଲାଣି । ନମସ୍କାର ସାର ... ।'

ବିଶ୍ୱମୋହନ ଫୋନ ରଖିଦେଲେ ।

ଏଇଟା ପ୍ରକୃଷ୍ଟ ସମୟ ।

ଆସନ୍ତା ବର୍ଷ ନିର୍ବାଚନ ।

ପାଞ୍ଚବର୍ଷ ତଳେ ସେ ମେୟର ଥିଲେ । ବର୍ତ୍ତମାନ ସାଧାରଣ ନାଗରିକ... ଅନାସ୍ଥା ପ୍ରସ୍ତାବ ତାଙ୍କ ବିରୁଦ୍ଧରେ ଆସିଥିଲା - ସପକ୍ଷରେ ଅଧିକ ଭୋଟ ହେବାରୁ ସେ ହାରିଯାଇଥିଲେ । ହଁ, ବର୍ତ୍ତମାନ ତାଙ୍କର ମନେ ପଡ଼ିଲା ... ସେତେବେଳେ ସେ ସହରର ଅନତି ଦୂରରେ ତାଙ୍କର ଗୋଟେ ଆବକ୍ଷ ପ୍ରତିମୂର୍ତ୍ତୀ ତିଆରି କରିଥିଲେ । କାଳେ ଭବିଷ୍ୟତରେ ତାଙ୍କର ଚେଲାମାନେ ତିଆରି ନ କରିବେ ଏଇ ଭୟରେ । ସେତେବେଳର

ପାଞ୍ଚବର୍ଷ ତଳେ  ସେ ମେୟର ଥିଲେ । ବର୍ତ୍ତମାନ ସାଧାରଣ ନାଗରିକ... ଅନାସ୍ଥା ପ୍ରସ୍ତାବ ତାଙ୍କ ବିରୁଦ୍ଧରେ ଆସିଥିଲା - ସପକ୍ଷରେ ଅଧିକ ଭୋଟ   ହେବାରୁ ସେ ହାରିଯାଇଥିଲେ । ହଁ, ବର୍ତ୍ତମାନ ତାଙ୍କର ମନେ ପଡ଼ିଲା ... ସେତେବେଳେ ସେ ସହରର ଅନତି ଦୂରରେ ତାଙ୍କର ଗୋଟେ ଆବକ୍ଷ ପ୍ରତିମୂର୍ତ୍ତି ତିଆରି  କରିଥିଲେ । କାଳେ ଭବିଷ୍ୟତରେ ତାଙ୍କର ଚେଲାମାନେ ତିଆରି ନ କରିବେ ଏଇ ଭୟରେ । ସେତେବେଳର ମୁଖ୍ୟମନ୍ତ୍ରୀ ତାଙ୍କ ଦଳର - ବର୍ତ୍ତମାନ ପରିସ୍ଥିତି ବଦଳି ଯାଇଛି - ବେଶ ଜାକଜମକରେ ତାଙ୍କ ପ୍ରତିମୂର୍ତ୍ତିକୁ ଉନ୍ମୋଚନ  କରାଯାଇଥିଲା - ତଳେ ଲେଖାଯାଇଥିଲା ' ସମାଜ ସଂସ୍କାରକ ବିଶ୍ୱମୋହନ ' । ତଳେ ସ୍ଥାପିତ ହେବାର ତାରିଖ ମଧ ଦିଆଯାଇଥିଲା । ବର୍ତ୍ତମାନ ସେଉ ମୂର୍ତ୍ତୀଟି ନିହାତି ଅବହେଳିତ ଅବସ୍ଥାରେ ସହରର ଏକ ମୁଣ୍ଡରେ ପଡ଼ିରହିଛି । ତାର ପରବର୍ଷ ସେ  ହାରିଗଲେ ... ।

ଯଦି ଆତଙ୍କ ବାଦୀମାନଙ୍କ ତାଲିକାରେ ତାଙ୍କ ନା ଥିବ  ଆଉ ସେ ମୂର୍ତ୍ତୀକୁ ଭଙ୍ଗାଯାଆନ୍ତା  ତେବେ ହୁଏତ ତାଙ୍କ ରାଜନୈତିକ ଜୀବନରେ ପୁଣି ଏକ ପରିବର୍ତ୍ତନର ସ୍ୱର ଦେଖାଦିଅନ୍ତା - ସମାଜ କାଗଜରେ ତାଙ୍କର ପ୍ରତିମୂର୍ତ୍ତିର ଫଟ ଏବଂ ସମ୍ବାଦ ବାହାରନ୍ତା ... ଲୋକେ ତାଙ୍କ ସମ୍ପର୍କରେ  ଜାଣିବାକୁ ସୁଯୋଗ ପାଆନ୍ତେ ଏବଂ ପରବର୍ତ୍ତୀ ନିର୍ବାଚନ ବୈତରଣୀ ସେ  ଖୁବ ସହଜରେ ପାର ହୋଇ ଯାଆନ୍ତେ ।

ବିଶ୍ୱମୋହନ କିଛି ଗୋଟାଏ ଯୋଜନା କରିବାକୁ ସ୍ଥିର କଲେ । ଆତଙ୍କବାଦୀ ମାନଙ୍କ କାର୍ଯ୍ୟ କଳାପ ନିରୀକ୍ଷଣ କରିବାକୁ ସେ ଗୋଟାଏ ଗୋଷ୍ଠୀ ତିଆରିକଲେ ଏବଂ ସେଥିରେ ତିନି ଚାରିଜଣ ଯୁବକଙ୍କୁ ସାମିଲ କଲେ ଏବଂ  ରାତ୍ରିର ବିଳମ୍ବିତ ପ୍ରହରରେ ସହର ପରିକ୍ରମାରେ ବାହାରିଲେ ।

ସହରରେ ଯେଉଁ ଯାଗାରେ ତାଙ୍କର ଆବକ୍ଷ ପ୍ରତିମୂର୍ତ୍ତୀ କରାଯାଇଥିଲା - ସେଠାରେ ଆଉ ଜନବସତି ନଥିଲା ... ଖାଲି କେତୋଟି ପୁରୁଣା ଅଫିସ ଥିଲା .. କାରଣ ସହରଟି ବିପରୀତ ଦିଗରେ ବଢ଼ିଯାଇଥିଲା ... କିନ୍ତୁ ତଥାପି ଜଣେ ପୂର୍ବତନ ମେୟରଙ୍କ ପ୍ରତିମୂର୍ତ୍ତୀକୁ ସେମାନେ କିପରି ଛାଡ଼ିଦେବେ ... ତାପରେ ଯେତେହେଲେ ସହର ଭିତରକୁ ଯିବାକୁ ହେଲେ ଏଇଟା ତ ବାଟ ।

ରାତି ବଢୁଥିଲା ... ସହର ନିର୍ଜନ ହୋଇ ଯାଇଥିଲା ... ବିଶ୍ୱମୋହନ ଏବଂ ତାଙ୍କ ଚାମଚାମାନେ ଛଦ୍ମ ବେଶରେ ଲୁଚି ଲୁଚି ଯାଇ ସେ ପୁରୁଣା ଅଫିସ ପାଖରେ ପହଞ୍ଚିଲେ ଏବଂ ଜଗୁଆଳ ସାଜି ଜଗି ରହିଲେ । ରାତି ବଢ଼ିବା ସଙ୍ଗେ ସଙ୍ଗେ ବିଶ୍ୱମୋହନ ବାବୁଙ୍କ ମନରେ ଭୟର ସଞ୍ଚାର ହେଲା । ସେ ଅନତି ଦୂରରେ ଗୋଟେ ବୁଦା ଆଢୁଆଳରେ

ଲୁଚି ରହିଲେ ।

କିଛି ସମୟପରେ କିଛି ଲୋକ ଅସ୍ତ୍ର ଶସ୍ତ୍ର ଧରି କଳାପୋଷାକରେ ଆସୁଥିବାର ତାଙ୍କର ଦୃଷ୍ଟିଗୋଚର ହେଲା ... ତାଙ୍କ ଭିତରୁ ଜଣେ ଯାଇ ଚାରି ଆଡ଼କୁ ଅନେଇଲା ଏବଂ ଶେଷକୁ ସେଇ ମୂର୍ତ୍ତୀ ପାଖରେ ପରିସ୍ରା କଲା .. । ତାର ଅନ୍ୟ ଜଣେ ବନ୍ଧୁ ତାକୁ କହିଲା 'ଦେଖୁଛୁ ଶଳା। ବିଶ୍ୱମୋହନ ମେୟରର ମୂର୍ତ୍ତିକୁ ? ଶଳା ଆମରି ପଇସାରେ ଏଇ ମୂର୍ତ୍ତୀ ତିଆରି କରିଛି । ଏତେ ବଡ଼ ଘର ଆମରି ପଇସାରେ ତିଆରି କରିଛି । ଆମେ ତାକୁ ଏଇ ଜଳସମ୍ପଦ ବିଭାଗରେ ହୋଇଥିବା ଠିକା କାମ ମାଗିଥିଲୁ, ଶଳା ଦେଲାନାହିଁ । ସେ ଶଳାକୁ ଏମିତି ପାନେ ଦେଲୁ ଯେ ଅନାସ୍ଥା ପ୍ରସ୍ତାବ ସପକ୍ଷରେ ବେଶୀ ଭୋଟ ଆସିଲା । ଶଳା ଏବେ ଘରେ ଚୁଡ଼ୀ ପିନ୍ଧି ଶୋଇ ଘୁଙ୍ଗୁଡ଼ି ମାରୁଥିବ - ଏ ଶଳାକୁ ଏଥର ନିର୍ବାଚନରେ ପାନେ ଦବାକୁ ପଡ଼ିବ ।' ତାର ଅନ୍ୟ ଦୁଇଜଣ ବନ୍ଧୁ ମଧ ଏକା ସ୍ୱରରେ କହି ଉଠିଲେ 'ବିଶ୍ୱମୋହନ ମୁର୍ଦାବାଦ୍ ... ମୁର୍ଦାବାଦ୍ ... ।'

ଏଇ ସମୟରେ ଏକ ବିରାଟ ବିସ୍ଫୋରଣ ଘଟିଲା .... ।

ଯେ ଯୁଆଡ଼େ ଛାଟି ପିଟି ହୋଇ ପଳେଇଲେ .... ।

ସକାଳୁ ଦେଖାଗଲା ସେଠାରେ ଥିବା ଜଳସମ୍ପଦ ଅଫିସଟି ବମ୍ ମାଡ଼ରେ ଧୂଳିସାତ ହୋଇଯାଇଛି - ଆଉ ତାରି ପ୍ରଭାବରେ ବିଶ୍ୱମୋହନଙ୍କ ପ୍ରତିମୂର୍ତ୍ତୀଟି ଭାଙ୍ଗି ପଡ଼ି ତଳେ ପଡ଼ିଯାଇଛି । ସକାଳର ସମ୍ବାଦପତ୍ର ମାନଙ୍କରେ ପ୍ରଥମ ପୃଷ୍ଠାରେ ସ୍ଥାନ ପାଇଥିଲା 'ଆତଙ୍କବାଦୀମାନେ ସହରରେ ପ୍ରଳୟ ଘଟାଇଛନ୍ତି - ସହରର ମୁଖ୍ୟ ସ୍ଥାନମାନଙ୍କରେ ଥିବା ମହାନ୍ ନେତାମାନଙ୍କର ପ୍ରତିମୂର୍ତ୍ତିକୁ ଭାଙ୍ଗି ଚୁରମାର କରିଦେଇଛନ୍ତି । ସହରର ଉପକଣ୍ଠରେ ଥିବା ଜଳସମ୍ପଦ ବିଭାଗର ଅଫିସକୁ ବୋମାମାଡ଼ରେ ଉଡ଼ାଇ ଦେଇଛନ୍ତି, ନିକଟରେ ଥିବା ଅନ୍ୟ କିଛି ସାଧାରଣଙ୍କ ଘର ମଧ ବୋମା ମାଡ଼ରେ ଭାଙ୍ଗି ରୁଜି ଯାଇଛି । ସହରରେ ଥିବା ପୂର୍ବତନ ମେୟର ବିଶ୍ୱମୋହନଙ୍କର ବିରାଟ ଅଟ୍ଟାଳିକାକୁ ମଧ ସେମାନେ ଛାଡ଼ିନାହାନ୍ତି ... ଅଟ୍ଟାଳିକାର ଅଧିକାଂଶ ଅଂଶ ଭାଙ୍ଗି ରୁଜି ଚୁରମାର ହୋଇଯାଇଛି । ପୂର୍ବତନ ମେୟରଙ୍କୁ ପୋଲିସ ଖୋଜୁଛି ।

❖

# ଜୀବନ ସଉଦା

ହଠାତ୍ କିଛି ଚିନ୍ତା ନ କରି 'ହଁ'ଟାଏ ଭରିଦେଲେ ନାରାୟଣ ବାବୁ । ସାଧାରଣ ମଣିଷ ଜଣେ, ସାଧାରଣ ଚାକିରି । ନିମ୍ନ ମଧ୍ୟବିତ୍ତ ପରିବାର, ଅଭାବ ଅସୁବିଧା ଯେଉଁଠି ସବୁବେଳେ ଲାଗି ରହିଛି । ପ୍ରସ୍ତାବ ମିଳିଲାନି ବୋଲି କ'ଣ ଯେଉଁଠି ମାନେ ସେଇଠି ଝିଅଟିକୁ ଟେକି ଦେବେ ନା କ'ଣ ? ମନଟା ବୁଝୁନି । ଯେତେହେଲେ ବଢ଼ିଲା ଝିଅ । ଯୁବତୀ, ପୁଣି ସୁନ୍ଦରୀ । ତାଙ୍କର ନିପାରିଲା ପଣକୁ ଦେଖି ଥିଲାବାଲା ଘରର ପ୍ରସ୍ତାବ କିଛି ଆସିଲା ନାହିଁ । ବାଧ ହୋଇ ଜମିଦାରଙ୍କ ପ୍ରସ୍ତାବରେ ହଁ ଭରିଦେଲେ । ଆଗକୁ ପୁଅ ବାହାଘର । ଝିଅ ବାହାଘର ସରିଲେ ଯାଇ ଯେଉଁ କଥା । ଜମିଦାର କୁବେର ମିଶ୍ରଙ୍କ ଅଚଳାଚଳ ସମ୍ପତ୍ତି । ଏ ଅଞ୍ଚଳରେ ବେଶ ନା ଅଛି । ଜମିଦାର ଘର ବୋଇଲେ ସେଇ ଗୋଟିଏ । ପୁଅ ମଧ ସେଇ ଗୋଟିଏ । ଜମିବାଡ଼ି, ସୁନା ଗହଣା, ବଡ଼ କୋଠା, ବଡ଼ ଘର ସବୁ ଅଛି । ପୁଅ ମଧ ସରକାରୀ ଚାକିରୀଟାଏ ପାଇଛି - କାଲି ସକାଳେ ଡେପୁଟୀ ହେବ, ଦିନ ଆସିଲେ ଜିଲ୍ଲାପାଳ ହେବାର ସମ୍ଭାବନାକୁ ମଧ ଏଡ଼ାଇ ଦିଆଯାଇନପାରେ । ନାରାୟଣ ମିଶ୍ରଙ୍କର ମାଷ୍ଟ୍ରିଆ ଚାକିରି । ଦରମା ଗଣ୍ଡାକ ଯାହା । ଗାଁରେ କିଛି ଜମିବାଡ଼ି । ପିଲାମାନଙ୍କୁ କିନ୍ତୁ ମଣିଷ କରିଛନ୍ତି । ଗୋଟିଏ ବୋଲି ଝିଅ ଦେଖି ଜମିଦାର କୁବେର ମିଶ୍ର ହଁ ଭରିଦେଲେ । କିନ୍ତୁ କଥା ଛିଣ୍ଡିଲା ବେଳକୁ ଯୌତୁକ କଥାଟା ଉଠିଲା । ସବୁ ଖର୍ଚ୍ଚ ବହନ କରି ସାରିଲା ପରେ ନାରାୟଣ ବାବୁ ଦେବେ ପଚାଶ ହଜାର ଟଙ୍କା, ନ ହେଲେ ବର ବେଦୀକୁ ଯିବ ନାହିଁ । ଯେଉଁଦିନ ଏ କଥା ଛିଣ୍ଡିଲା... ସେଦିନ ତାଙ୍କ ଘରର ସମସ୍ତେ ଉପସ୍ଥିତ ଥିଲେ । ହଠାତ୍ ସ୍ତମ୍ଭୀଭୂତ ହୋଇଗଲେ ନାରାୟଣ ବାବୁ । ବହୁ ଅନୁନୟ ବିନୟ ପରେ ଉଭୟ ପକ୍ଷ ରାଜି ହେଲେ ବିବାହ ପୂର୍ବରୁ ପଚିଶ ହଜାର ଟଙ୍କା ଏବଂ ବିବାହର ବର୍ଷକ ଭିତରେ ଆଉ ପଚିଶ ହଜାର ଟଙ୍କା ।

କୌଣସି ମତେ ବାହାଘର କାମଟା କରିଦେଇ ବସିଗଲେ ନାରାୟଣ ମିଶ୍ରେ, କିନ୍ତୁ ଚିନ୍ତାଟା ତାଙ୍କ ମନ ଭିତରୁ ଗଲା ନାହିଁ । ଗାଁରେ ଯାହାକିଛି ଜମି ଅଛି, ତାକୁ ବିକିଦେଲେ ପଚିଶ ହଜାର ଟଙ୍କା ହେବ ନାହିଁ । ପୁଅମାନେ କେହି ଚାକିରି କରି ନାହାନ୍ତି । ଆଉ ଉଧାର କଲେ ସୁଧ ବେଶୀ । ଶୁଝିବେ ସେ କିପରି ? ତା'ପରେ ବର୍ଷ ସାରା ପୁଣି ପର୍ବପର୍ବାଣୀ ଅଛି । ଝିଅ ଘରକୁ ଭାର ଯିବ । ଜମିଦାର ଘରର ବୋହୂ ହୋଇଛି ତାଙ୍କ ଝିଅ । ନିଜର ମାନ ସମ୍ମାନକୁ ଜଗି ଭାର ଯିବା ଚାହି । ଅରୁଣିମା ବାପାଙ୍କ ମୁହଁକୁ ଦେଖି ସବୁ ବୁଝିପାରେ - କିଛି କହିପାରେନା । ଶାଶୁଘର କଥା ସିଏ କହିପାରେନା ।

ବାପା ମାଆ ବିଶ୍ୱାସରେ ଝିଅକୁ ଟେକି ଦେଇଛନ୍ତି ବଡ଼ଘରେ । ସେ ସେମାନଙ୍କର ବିଶ୍ୱାସରେ ବିଷ ଦେବ ନାହିଁ । ପ୍ରତି କଥାରେ ଶାଶୁ ତା'ର ଭୁଲ ବାଛନ୍ତି - ପ୍ରତି କାମରେ ତାକୁ ଭର୍ତ୍ସନା କରନ୍ତି । କୁହନ୍ତି "ତୁ ଆସିଛୁ ଛୋଟ ଘରୁ, ଆମ ଘରେ ଚଳିବୁ କେମିତି ?" ଏ ସବୁର କାରଣ ଅରୁଣିମା ଜାଣିପାରେ, ହେଲେ କିଛି କହିପାରେନା । ପାଖ ପଡ଼ୋଶୀମାନେ ଅରୁଣିମାକୁ ପ୍ରଶଂସା କଲେ କ'ଣ ହେବ ଶାଶୁଙ୍କ ଦେହରେ ଯାଏନି । ଶାଶୁ ଶ୍ୱଶୁର ବାରମ୍ବାର ମନେପକାଇ ଦିଅନ୍ତି ।

ମାସ ମାସ ବିତିବାରେ ଲାଗିଲା । ନୂଆ ନୂଆ ଅରୁଣିମା ଘରୁ ଭାଇ ବନ୍ଧୁମାନେ ଆସୁଥିଲେ, କିନ୍ତୁ ଶାଶୁ ଶ୍ୱଶୁରଙ୍କର ଅନାଦର ଯୋଗୁଁ ସେମାନେ ବେଶୀ ଆସନ୍ତି ନାହିଁ । କ୍ରମେ ନାରାୟଣ ବାବୁଙ୍କର କାନରେ ତାଙ୍କ ଝିଅ ଅସୁବିଧାରେ ଥିବା ଖବର ପଡ଼ିଲା । ସେ ଭାବିଲେ ଯାହା କିଛି ଜମିବାଡ଼ି ଅଛି, ସେତକ ବିକିଦେଇ ସମୁଦିଙ୍କୁ ଦେଇ ଆସିବେ । ତା'ହେଲେ ଯାଇ ରକ୍ଷା, ନ ହେଲେ ଏକମାତ୍ର ଅଲିଅଳ ଝିଅ ତାଙ୍କର ଦୁଃଖ କଷ୍ଟରେ ସଢ଼ି ସଢ଼ି ମରିଯିବ । କିନ୍ତୁ ଘରେ ଅନ୍ୟ ପିଲାମାନେ ଅଛନ୍ତି, ସେମାନଙ୍କ କଥା ବୁଝିବ କିଏ ? ବଡ଼ କଷ୍ଟରେ ଗାଁର କିଛି ଜମି ପିଲାମାନଙ୍କୁ ନ ଜଣାଇ ବିକ୍ରି କରିଦେଲେ । ଏଥର ଜମିବିକା ଟଙ୍କା ଦଶହଜାର ନେଇ ସମୁଦି ଘରକୁ ଯିବେ । ସମୁଦିଙ୍କୁ ବୁଝେଇ କହିବେ ଆଉ ପନ୍ଦର ହଜାର ଟଙ୍କା ଆସନ୍ତା ଛଅ ମାସ ଭିତରେ ଦେବେ । ଝିଅକୁ ଟିକିଏ ଦେଖି ଆସିବେ ।

କୁବେର ମିଶ୍ରଙ୍କ ଘରେ ପହଞ୍ଚିଲେ ନାରାୟଣ ବାବୁ । ଅରୁଣିମା ବାପାଙ୍କୁ ଦେଖି ଦଉଡ଼ି ଆସିଲା । କିନ୍ତୁ ତାକୁ ଅଟକାଇ ଦେଲେ ଶ୍ୱଶୁର କୁବେର ମିଶ୍ର । କହିଲେ, ଆଗେ ବାପାଙ୍କୁ ପଚାର, ଦେଇଥିବା କଥା ଅନୁସାରେ ଟଙ୍କା ଆଣିଛନ୍ତି ତ ? ନ ହେଲେ ସେ ସେଇଠୁ ଫେରି ଯାଆନ୍ତୁ । ନାରାୟଣ ମିଶ୍ର ବହୁ ଅନୁନୟ କରି କହିଲେ, "ସମୁଦି ମୋ ଝିଅକୁ କ'ଣ ମୁଁ ଦେଖି ପାରିବିନି ?" କୁବେର ମିଶ୍ର କହିଲେ, "ହଁ ଦେଖି ପାରିବ, କିନ୍ତୁ ପଚାଶହଜାର ଟଙ୍କା ଦେଲା ପରେ ।"

ଆଖିରୁ ଲୁହ ଝରିପଡ଼ିଲା । ଅରୁଣିମା ଭିତରକୁ ଚାଲିଗଲା । ନାରାୟଣ ମିଶ୍ର ବଡ଼ କଷ୍ଟରେ ନିଜ ବ୍ୟାଗ ଭିତରୁ ଦଶହଜାର ଟଙ୍କା କାଢ଼ି ସମୁଦିଙ୍କ ଟେବୁଲ ଉପରେ ରଖିଲେ ଏବଂ ହାତଯୋଡ଼ି କହିଲେ, "ବଡ଼ କଷ୍ଟରେ ଏତକ ଯୋଗାଡ଼ କରିପାରିଲି ସମୁଦି । ଆପଣଙ୍କର ସବୁ ଡିମାଣ୍ଡ ମୁଁ ପୂରଣ କରିବି, ଆଉ କିଛିଦିନ ମହଲତ ମାଗୁଛି । ଆଉ ଦୁଇ ତିନି ମାସରେ ପୂଜା ଆସିଯିବ । ସେତେବେଳକୁ ମୁଁ ଆସିବି... ପୂରା ଟଙ୍କା ନେଇ ଆସିବି । ଏଥରକ ଟିକିଏ ଝିଅକୁ ଡାକି ଦିଅନ୍ତୁ ।" ଥୁଆ ହୋଇଥିବା

ଟଙ୍କା ପ୍ୟାକେଟ୍‌ଟାକୁ ତଳେ ଫୋପାଡ଼ି ଦେଲେ କୁବେର ମିଶ୍ର ଏବଂ କହିଲେ, "କେତେଥର ଏମିତି ଭଣ୍ଡିବ ନାରାୟଣ ମିଶ୍ରେ ? ଥରଥର କରି ଅନେକ ଥର ଏଭଳି କଥା କହିଲଣି ତୁମେ - ଏଥରକ ପୂରା ଟଙ୍କା ନ ଆଣିଲେ ତମ ଝିଅକୁ ତମ ସାଙ୍ଗରେ ଘରକୁ ନେଇଯିବ ସବୁଦିନ ପାଇଁ । ଆଜି ଯାଅ... ମୋର ତେଣେ ଅନେକ କାମ ।" ଝିଅକୁ ଦେଖିବାର ଆଶା ମଉଳିଗଲା ନାରାୟଣ ବାବୁଙ୍କର । କ'ଣ ଆଶା କରି ଝିଅକୁ ଦେଇଥିଲେ, କ'ଣ ପାଇଲେ ବର୍ତ୍ତମାନ । କେବଳ ଅପମାନ, ଲାଞ୍ଛନା । ପ୍ରତିବାଦ କରିବାର ଶକ୍ତି ନାହିଁ । ସେ ପିନ୍ଧା ଲୁଗାରେ ଆଖିରେ ଲୁହ ପୋଛି ବାହାରକୁ ଚାଲି ଆସିଲେ । ପଛକୁ ଫେରି ଦେଖିଲେ ଦୁଆର ମୁହଁରେ ଠିଆ ହୋଇ ଆଖିର ଲୁହ ପୋଛୁଛି ଅରୁଣିମା ।

କିଛିଦିନ ପରେ ଚିଠି ପାଇଲେ । ଝିଅ ଲେଖିଛି । "ବାପା ! ଅନେକ ଦିନ ହେଲା ତମକୁ, ବୋଉକୁ ଦେଖିନି.... ଯିବାକୁ ଭାରି ଇଚ୍ଛା ହେଉଛି । ତମେ ଆସିବ ଏଥର... ମୁଁ ତମ ସାଙ୍ଗରେ ଯିବି ।" ଚିଠି ପାଇ ଅରୁଣିମାର ମା' ଖାଲି ଥରକୁ ଥର ମୂର୍ଚ୍ଛା ଗଲେ । ନିଶ୍ଚେ ତାଙ୍କ ଝିଅର କିଛି ହୋଇଛି । ନ ହେଲେ ଏଭଳିଆ ଚିଠି କାହିଁକି ଲେଖନ୍ତା ସିଏ ।

ଝିଅ ଚିଠି ପାଇଲା ପରଠୁ ନାରାୟଣ ବାବୁଙ୍କ ଆଖିରୁ ନିଦ ହଜିଯାଇଛି । ଝିଅ ଯେତେବେଳେ ବାପ ଘରକୁ ଆସିବାକୁ ଚାହୁଁଛି, ତାକୁ କେମିତି ସେ ନ ଆଣି ରହିପାରିବେ ? ସମୁଦିଙ୍କୁ ଏଥର କେମିତି ସାମନା କରିବେ । ଟଙ୍କା ଯୋଗାଡ଼ କରିନପାରି କେମିତି ସିଏ ସମୁଦି ଘରର ଦୁଆର ବନ୍ଧ ଡେଇଁବେ ?

ପୂଜା ପାଖେଇ ଆସୁଛି । ଘରେ ସମସ୍ତଙ୍କ ପାଇଁ ନୂଆ ଲୁଗା ତିଆରି ହେବ । ଝିଅ ଘରକୁ ମଧ ଭାର ଯିବ । ଏଥର କିନ୍ତୁ ସେ ଆଉ ସେମିତି ଯିବେ ନାହିଁ । ଟଙ୍କା ଯୋଗାଡ଼ କରିବେ । ଝିଅକୁ ଦେଖାକରିବେ - ତାକୁ କିଛି ଦିନ ପାଇଁ ଘରକୁ ଆଣିବେ । ବିଚରା ବାହା ହେଲା ପରଠାରୁ ବାପ ଘର ଦେଖିନି । ଦୁଇ ବର୍ଷ ହେଲାଣି ।

ଏବେ କୁବେର ମିଶ୍ର ଟଙ୍କା ନ ପାଇ ଖାଲି ନାଗ ସାପ ପରି ଫଁ ଫଁ ହେଉଛନ୍ତି । ଜମିଦାରୀଆଣୀ ମଧ କମ୍ ନୁହଁନ୍ତି । ଅରୁଣିମାର ସ୍ୱାମୀ ମଧ କିଛି ଦିନ ପାଇଁ ବାହାରକୁ ଯାଇଛନ୍ତି - କହିଛନ୍ତି ପୂଜା ପୂର୍ବରୁ ଫେରି ଆସିବେ । ଏଥର ଧୂମଧାମରେ ପୂଜା ପାଳନ ହେବ । ଅରୁଣିମା ମଧ ସ୍ୱାମୀଙ୍କର ଅନୁମତି ନେଇ ସାରିଛି । ସ୍ୱାମୀ ଗଲା ପରେ ଅରୁଣିମା ପ୍ରତି ସେମାନଙ୍କର ଦୁର୍ବ୍ୟବହାର ବଢ଼ିଚାଲିଛି । ଏପରିକି ତା'ର ଖାଇବା ପିଇବା ଯତ୍ନ ମଧ କେହି ନେଉନାହାନ୍ତି । କଥା କଥାକେ ଶାଶୁ କହୁଛନ୍ତି, "ଆସିଲାବେଳେ

ତ ଖାଲି ହାତରେ ଆସିଲୁ ଆଉ ଭଲ ଖାଇବା ଭଲ ପିନ୍ଧିବା କେଉଁଠୁ ମିଳିବ ? ଭଲ ଗତି ଅଛି ତ ତୋ ବାପାକୁ କହ ସେ ଘର ବାଡ଼ି ସବୁ ଆମ ନାଁରେ କରିଦେବେ... ତୁ ଆରାମ ପାଇବୁ । ଆମେ ମଧ ଆରାମରେ ରହିବୁ ।'' ଅରୁଣିମା କିଛି କହିପାରେ ନାହିଁ । ଘରେ ତା'ର ଛୋଟ ଛୋଟ ଭାଇ ଅଛନ୍ତି । ବାପା ମାଆଙ୍କର ବୟସ ହେଲାଣି, ସେମାନେ ଯିବେ ବା କୁଆଡ଼େ ? ଅରୁଣିମା ଶୋଉଥିବା ଖଟର ବିଛଣା ନାହିଁ । କେବେ କେଉଁଥିରେ ମାନ ଅଭିମାନ କରିନାହିଁ ସେ । ଏପରିକି ତାଙ୍କ ଘରୁ କେବେ କେହି ଲୋକ ଆସିଲେ ତାକୁ ସାକ୍ଷାତ କରିବାକୁ ମଧ ଅନୁମତି ଦିଆଯାଉ ନାହିଁ । ନିଜ ଘରେ ବଡ଼ ବୋହୂ ପରି ସମ୍ମାନ ପାଇବା ପରିବର୍ତ୍ତେ ଚାକରାଣୀ ପରି ତାକୁ ଚଳିବାକୁ ହେଉଛି । କାହାକୁ କହିବ ସେ, ସ୍ୱାମୀ ତ ନାହାନ୍ତି । ଶାଶୁ-ଶ୍ୱଶୁର ପ୍ରତି କଥାରେ ତାକୁ ଉଲୁଗୁଣା ଦେଉଛନ୍ତି । ଯଦି ଖାଇବା ନ ରୁଚିଲା ତେବେ ଶାଶୁ କୁହନ୍ତି, ''ବଡ଼ ଘରୁ ଆସିଛୁ କିନା ଆମ ଘରର ଖାଇବା ତତେ ରୁଚୁ ନାହିଁ ।''

ଧୀରେ ଧୀରେ ଅରୁଣିମା ଅସୁସ୍ଥ ହୋଇପଡ଼ିଲା - କୌଣସି ଖାଦ୍ୟ ତା' ପେଟକୁ ଗଲା ନାହିଁ... ଖାଇବା ପିଇବା କେଉଁଥିରେ ହେଲେ ତା'ର ମନ ଲାଗିଲା ନାହିଁ । ଦିନେ ବହୁ କଷ୍ଟରେ ଶାଶୁଙ୍କୁ କହିଲା, ''ମାଆ ମୋ ଦେହ ଭଲ ନାହିଁ... ଟିକିଏ ଘରକୁ ଯିବାକୁ ଇଚ୍ଛା ହେଉଛି ।'' ଶାଶୁ ଭାବିଲେ ଇଏ ଯେତେ ସବୁ ଦେହ ଖରାପ ବୋଲି କହୁଛି, ଏହାରି ମୂଳରେ ଅଛି ବାପ ଘରକୁ ଯିବାର ଇଚ୍ଛା । 'ସେସବୁ ହୋଇପାରିବ ନାହିଁ' କହି ଶାଶୁ ଦୁମ୍ ଦୁମ୍ କରି ଘରୁ ବାହାରି ଚାଲିଗଲେ ।

ଦିନେ ରାତିରେ ନାରାୟଣ ମିଶ୍ରେ ସ୍ୱପ୍ନ ଦେଖିଲେ । ଝିଅ ତାଙ୍କର ବହୁତ ବିକଳ ହୋଇ ଡାକୁଛି, 'ବାପା ତମେ ଜଲଦି ଆସ ନ ହେଲେ ମତେ ତମେ ଦେଖିପାରିବ ନାହିଁ ।' ନାରାୟଣ ମିଶ୍ରେ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କର ଧୈର୍ଯ୍ୟର ବାଲିବନ୍ଧ ସବୁ ଭୁଶୁଡ଼ି ପଡ଼ିଲା । ସେ ଭାବିଲେ ଏଥର ଯଦି ଯିବେ ଆଉ ଖାଲି ହାତରେ ନୁହେଁ । ସେ ମାଖନ୍ ଲାଲ ମାରୱାଡ଼ି ପାଖକୁ ଗଲେ... ଆଉ କିଛି ଟଙ୍କା କରଜ ଆଣିଲେ । ନିଜର ଘର ବନ୍ଧା ପକାଇଲେ । କହିଲେ ଦୁଇ ବର୍ଷ ଭିତରେ ଶୁଝିଦେବେ । ଏ ବିଷୟରେ ଘରେ କାହା ସାଙ୍ଗରେ କଥାବାର୍ତ୍ତା କଲେ ନାହିଁ । ଘରବନ୍ଧା ପକାଇବା ପାଇଁ କେହି ବି ରାଜି ହେବେ ନାହିଁ । କିନ୍ତୁ ବର୍ତ୍ତମାନ କ'ଣ କରାଯାଇପାରେ ? ଯେତେବେଳେ ଯାହା ପରିସ୍ଥିତି ଉପୁଜେ, ସେଇ ଅନୁସାରେ କାର୍ଯ୍ୟ କରିବାକୁ ପଡ଼ିବ । ପରେ ଫଳାଫଳ କ'ଣ ହେଉଛି ଦେଖିବା ।

ସେତେବେଳକୁ ପୂଜା ପାଖେଇ ଆସୁଥାଏ । ନାରାୟଣ ମିଶ୍ରେ ନିଷ୍ପତ୍ତି ନେଲେ

ଏଥରକ ସିଏ ଯିବେ । ଟଙ୍କା ତ ଯୋଗାଡ଼ ହୋଇଗଲା ଆଉ କ'ଣ । ସମୃଦ୍ଧି କୁବେର ମିଶ୍ର ଆନନ୍ଦରେ ଝିଅକୁ ତାଙ୍କ ସହିତ ଛାଡ଼ିବେ । ଝିଅ ଘରକୁ ଆସିବ । ଘରେ ସ୍ତ୍ରୀ ମଧ ଖୁସିରେ ନାଚୁଛନ୍ତି । ଅନେକ ଦିନ ପରେ ନାନୀ ଘରକୁ ଆସୁଛି ।' ତେଣୁ ଭାଇମାନେ ତତୋଧିକ ଖୁସି ।

କୁବେର ମିଶ୍ରଙ୍କ ଘରେ ଭୋଜିଭାତ ଚାଲିଛି । ନାରାୟଣ ମିଶ୍ର ତାଙ୍କ ଘରେ ପହଞ୍ଚିଲା ବେଳକୁ ସଞ୍ଜ ରତ ରତ । ଘର ବାହାରେ ଅନେକ ଲୋକଙ୍କ ସମାବେଶ । କ୍ୱାଇଁ ବୋଧେ ଘରକୁ ଆସିଛନ୍ତି ନ ହେଲେ ଏ ଭୋଜି ଭାତର ଆୟୋଜନ କାହିଁକି । ଟିକିଏ ଅଟକି ଯାଇ ବାହାରେ ଅପେକ୍ଷାରତ ଭଦ୍ରଲୋକଙ୍କୁ ଏ ବିଷୟରେ ପଚାରିଲେ ।

ଭଦ୍ରଲୋକ ଜଣକ କହିଲେ, ''ଆପଣ କ'ଣ ଜାଣିନାହାନ୍ତି ଆଜ୍ଞା... ଏଠି ବଡ଼ ଲୋକଙ୍କ ଘରେ ସବୁ କିଛି ବଡ଼ ଯାକଜମକରେ ହୁଏ । ଏଇ ଦେଖୁନାହାନ୍ତି ଆଜ୍ଞା ଝିଅ ବାହାଘର ହୋଇଥିଲା, କି ଭୋଜି ସିଏ ? ଆମ ହାତରୁ ଏ ପର୍ଯ୍ୟନ୍ତ ସେ ବାସନା ଯାଇନାହିଁ । ଆଜି ବଡ଼ ବୋହୂ ମରିଯିବାର ଏଗାର ଦିନ, ସେଥିପାଇଁ ଏ ଭୋଜି... । ଆପଣ ବସି ଯାଆନ୍ତୁ, ଆଉ ଡେରି କରନ୍ତୁ ନାହିଁ । ସାରା ଗାଁକୁ ନିମନ୍ତ୍ରଣ କରାଯାଇଛି । ଅପେକ୍ଷା କଲେ ଡେରି ହେବ ।'' ନାରାୟଣ ବାବୁ ବସିବେ କ'ଣ, ସେଇଠି ଟଳିପଡ଼ିଲେ ।

❖

# ଲେଖକଙ୍କର ଅନ୍ୟାନ୍ୟ ରଚନାବଳୀ

## ମୌଳିକ କୃତି (ଗଳ୍ପ ସଂକଳନ)



ଚନ୍ଦ୍ରଶେଖର ଦାସବର୍ମା
ଜନ୍ମ: ୧-୩-୧୯୪୫
ସ୍ଥାନ: ଥୋରିଆ ସାହି କଟକ

କଥାକାର ଶ୍ରୀଯୁକ୍ତ ଚନ୍ଦ୍ରଶେଖର ଦାସବର୍ମା ବିଗତ ତିନି ଦଶନ୍ଧି ଧରି ନିରବଚ୍ଛିନ୍ନ ଭାବେ କଲମ ଚଳାଇ ଓଡ଼ିଆ କଥା ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ପ୍ରଖ୍ୟାତ କବି ଡକ୍ଟର ମାୟାଧର ମାନସିଂହଙ୍କର ସେ ହେଉଛନ୍ତି ଆତ୍ମୀୟ । ପିଲାଟି ଦିନରୁ ଓଡ଼ିଆ କଥା ସାହିତ୍ୟ ପ୍ରତି ତାଙ୍କର ଦୁର୍ବଳତା । ସ୍କୁଲ ଏବଂ କଲେଜ ଜୀବନରେ ତାଙ୍କର ଲେଖା ପ୍ରକାଶିତ ହୋଇ ପାଠକୀୟ ଶ୍ରଦ୍ଧା ଲାଭକରେ । ତା'ପରେ ଶ୍ରୀ ଦାସବର୍ମା ଆଉ ପଛକୁ ଫେରି ଚାହିଁ ନାହାନ୍ତି । ୧୯୭୦ ମସିହାରେ ତାଙ୍କ ଦ୍ୱାରା ସମ୍ପାଦିତ 'କଥାକାର' (ଗଳ୍ପ ପତ୍ରିକା) ଜନମାନସରେ ବେଶ୍ ଆଦୃତ ହୁଏ । ତତ୍ ସଙ୍ଗେ ସଙ୍ଗେ ସେ ସମ୍ପାଦନା କରନ୍ତି ଅଧୁନା ଏକ ତ୍ରିବେଣୀ ସାହିତ୍ୟ ପତ୍ରିକା । ୧୯୮୩ରେ ତାଙ୍କର ପ୍ରଥମ ଗଳ୍ପ ସଂକଳନ 'ଅନ୍ୟମଣିଷ' ପ୍ରକାଶ ପାଏ । ତାଙ୍କ ଦ୍ୱାରା ଏଯାବତ୍ ରଚିତ ୨୬ ଗୋଟି ମୂଲ୍ୟବାନ ଗ୍ରନ୍ଥ ଓଡ଼ିଶାର ପ୍ରତିଷ୍ଠିତ ପ୍ରକାଶକମାନଙ୍କ ଦ୍ୱାରା ପ୍ରକାଶିତ । ସେଥିରେ ଅଛି ୧୪ଟି ଗଳ୍ପ ସଂକଳନ, ୮ଟି ଅନୁବାଦ, ୨ଟି ନାଟ୍ୟ ସଂକଳନ, ୧ଟି ଆଲୋଚନା ଗ୍ରନ୍ଥ ଏବଂ ୧ଟି ପ୍ରବନ୍ଧ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ କଲମ ଚାଳନା କରି ସେ ଉଚ୍ଚପ୍ରଶଂସିତ । ତାଙ୍କ ଦ୍ୱାରା ଅନୁଦିତ 'ଗୋଟିଏ ଗଧର ଆତ୍ମକଥା' ୧୯୯୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଏ । ପରବର୍ତ୍ତୀ ସମୟରେ ଏହି ଉପନ୍ୟାସଟି ନାଟ୍ୟରୂପ ନିଏ ଏବଂ ରବିନ୍ଦ୍ର ମଣ୍ଡପଠାରେ ଅଭିନୀତ ହୁଏ । ଏହି ନାଟକଟି ଅସାମିୟା ଭାଷାରେ ଅନୁଦିତ ହୋଇ ଗୌହାଟିରେ ମଧ ମଞ୍ଚସ୍ଥ ହେବାର ସୌଭାଗ୍ୟ ଅର୍ଜନ କରିଛି । ତା'ଛଡ଼ା ତାଙ୍କର ଅନ୍ୟ କେତୋଟି କ୍ଷୁଦ୍ର ଗଳ୍ପ ମଧ ନାଟକରେ ରୂପାନ୍ତରିତ ହୋଇ ମଞ୍ଚରେ ପ୍ରଦର୍ଶିତ ହୋଇଛି ।

ବିଭିନ୍ନ ସାହିତ୍ୟ ସଂସ୍ଥାଦ୍ୱାରା ସେ ପୁରସ୍କୃତ ଏବଂ ସମ୍ମାନିତ । ତନ୍ମଧ୍ୟରୁ ଆଦିକବି ସାରଳା ଦାସ ସମ୍ମାନ, ଫକୀରମୋହନ କ୍ଷୁଦ୍ରଗଳ୍ପ ପୁରସ୍କାର,ଉପେନ୍ଦ୍ର ଭଞ୍ଜ ପୁରସ୍କାର, ଚିନ୍ତା ଚେତନା ରାଷ୍ଟ୍ରୀୟ ସମ୍ମାନ, ସମ୍ପର୍କ ସମ୍ମାନ, ବିଶିଷ୍ଟ ସାହିତ୍ୟିକ ପୁରସ୍କାର, ଗୋକର୍ଣ୍ଣିକା ସାହିତ୍ୟ ସମ୍ମାନ ପୁରସ୍କାର, ଜୀବନରଙ୍ଗ ସମ୍ମାନ ଇତ୍ୟାଦି ଅନ୍ୟତମ । ତାଙ୍କର କିଛି ଗଳ୍ପ ସଂକଳନ ହିନ୍ଦୀ, ଇଂରାଜୀ, ବଙ୍ଗଳା ଏବଂ ସଂସ୍କୃତରେ ଅନୁଦିତ ।

କଥାକାର ଶ୍ରୀ ଚନ୍ଦ୍ରଶେଖର ଦାସବର୍ମା ଓଡ଼ିଆ କଥା ସାହିତ୍ୟର ଜଣେ ଅପ୍ରତିଦ୍ୱନ୍ଦୀ କଥାଶିଳ୍ପୀ । ତାଙ୍କ ଦ୍ୱାରା ରଚିତ କଥାମାନ ପାଠକମାନଙ୍କ ହୃଦୟକୁ ସ୍ପର୍ଶ କରନ୍ତି ଅତି ନିବିଡ଼ ଭାବେ । କଥାକାର ସେଇ ପାଠକମାନଙ୍କ ହୃଦୟକୁ ଜୟ କରିବା ପାଇଁ ଶତତ ଚେଷ୍ଟିତ । ତାଙ୍କ ଗଳ୍ପଗୁଡ଼ିକରେ ଚରିତ୍ରମାନଙ୍କର ବର୍ଣ୍ଣନାଶୈଳୀ ଅତ୍ୟନ୍ତ ଚମତ୍କାର । ଶ୍ରୀଯୁକ୍ତ ଦାସବର୍ମାଙ୍କର ଯାଦୁକରୀ ସ୍ପର୍ଶରେ ଗଳ୍ପର ଚରିତ୍ରମାନେ ହୋଇ ଉଠନ୍ତି ପ୍ରାଣବନ୍ତ । ଓଡ଼ିଶାର ଅଗଣିତ ପାଠକମାନଙ୍କର ସେ ଖୁବ୍ ପ୍ରିୟ ଲେଖକ ଭାବରେ ପରିଗଣିତ ।